# ମୁଁ କିପରି ହେବି ?

**ମୂଲ୍ୟବୋଧ ଭିତ୍ତିକ ଶିକ୍ଷା ପୁସ୍ତକ**

(ଅଷ୍ଟମ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ପାଇଁ)



*Brahmacharya*

ତତ୍ୱମସି

$E=mc^2$

ଶ୍ରଦ୍ଧା



ରାମକୃଷ୍ଣ ମିଶନ, ବେଲୁଡ଼ ମଠ

# ମୁଁ କିପରି ହେବି ?

ମୂଲ୍ୟବୋଧ ଭିତ୍ତିକ ଶିକ୍ଷା ପୁସ୍ତକ
(ଅଷ୍ଟମ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ପାଇଁ)

ସ୍ୱାମୀ ବିବେକାନନ୍ଦଙ୍କ
ସାର୍ଦ୍ଧଶତବର୍ଷ ଜନ୍ମ ଉତ୍ସବ
ଅବସରରେ ପ୍ରକାଶିତ

**How Shall I be ?**

A Value Education Textbook for Class VIII Students




ରାମକୃଷ୍ଣ ମିଶନ
ବେଲୁଡ଼ ମଠ



**ପ୍ରକାଶକ**

ସାଧାରଣ ସଂପାଦକ

ରାମକୃଷ୍ଣ ମଠ ଏବଂ ରାମକୃଷ୍ଣ ମିଶନ

ବେଲୁଡ଼ ମଠ, ଜିଲ୍ଲା : ହାଓଡ଼ା

ପଶ୍ଚିମ ବଙ୍ଗ : ୭୧୧୨୦୨, ଭାରତ

ସ୍ୱାମୀ ବିବେକାନନ୍ଦ ସାର୍ଦ୍ଧଶତବର୍ଷ ଜନ୍ମଉତ୍ସବ ଉଦ୍ଦେଶ୍ୟରେ ଗଠିତ ସମିତି

ଅର୍ଥାନୁକୂଲ୍ୟରେ ଏହି ପୁସ୍ତକଟି ପ୍ରକାଶିତ



ପ୍ରଥମ ସଂସ୍କରଣ–୨୦୧୨

ଦ୍ୱିତୀୟ ସଂସ୍କରଣ–୨୦୧୪

ତୃତୀୟ ସଂସ୍କରଣ–୨୦୧୫

**ମୁଦ୍ରଣ ଓ ବିତରଣ**

ସଂପାଦକ, ରାମକୃଷ୍ଣ ମିଶନ

ବିବେକାନନ୍ଦ ମାର୍ଗ, ଭୁବନେଶ୍ୱର – ୭୫୧ ୦୦୨

(ନିଃଶୁଳ୍କ ବିତରଣ)

ଭାରତରେ ମୁଦ୍ରିତ

ମା କାଳୀ ଷ୍ଟେସନାରୀ ୱାର୍କସ

ଭୁବନେଶ୍ୱର – ୭୫୧ ୦୦୬

ମୋ : ୯୪୩୭୬୨୭୩୫୨, ୯୩୩୭୮୭୨୨୩୩

# ମୁଖବନ୍ଧ

ଶିକ୍ଷା ସମ୍ବନ୍ଧରେ ସାଧାରଣତଃ ଗୋଟିଏ ପ୍ରଶ୍ନ ପଚରା ହୋଇଥାଏ, ତାହା ହେଲା : କ'ଣ ଶିକ୍ଷା କେବଳ ଜୀବନ ନିର୍ଦ୍ଧାରଣର ଗୋଟିଏ ମାଧ୍ୟମ ଅଥବା ଶିକ୍ଷାର ଉଦ୍ଦେଶ୍ୟ ମଣିଷର ସଂପୂର୍ଣ୍ଣ ଜୀବନକୁ ସମୁଚିତ ପଥରେ ପରିଚାଳନା କରିବା ?

କ'ଣ ଆମେ ଜଣେ ବ୍ୟକ୍ତିଙ୍କୁ ଶିକ୍ଷିତ କହିବା ଯଦି ତାଙ୍କ ପାଖରେ କିଛି କୌଶଳ ଅଛି; ଯାହା ତାଙ୍କୁ ସଂସାର ରୂପକ ଚକ୍ରର ଦକ୍ଷ ଚକ୍ରଦନ୍ତଭାବରେ ପ୍ରତିପାଦିତ କରିବ ? କ'ଣ ସମାଜରେ ଥିବା ଉତ୍ପାଦନ ପ୍ରଣାଳୀରେ ଯୋଗଦେବାର ଦକ୍ଷତା କେବଳ ମଣିଷର ଶିକ୍ଷାକୁ ମାପିବାର ମାପକ ? ପରସ୍ପର ମଧ୍ୟରେ ସମୁଚିତ ବୁଝାମଣାକୁ ଗୁରୁତ୍ୱ ଦେବା କ'ଣ ଆମ ଜୀବନର ମହତ୍ତ୍ୱପୂର୍ଣ୍ଣ ଅଙ୍ଗ ନୁହେଁ କି ? ମନୁଷ୍ୟର ଅବିଶ୍ୱସନୀୟ ଜ୍ଞାନର ବୃଦ୍ଧି ସତ୍ତ୍ୱେ, ଉତ୍ପାଦନ ପ୍ରକ୍ରିୟାକୁ ବଢ଼ାଇବା ପାଇଁ ଅତି ଆଧୁନିକ ଓ ମାର୍ଜିତ କୌଶଳ ସତ୍ତ୍ୱେ, କାହିଁକି ଘରେ ଏବଂ କର୍ମକ୍ଷେତ୍ରରେ ଅସନ୍ତୋଷ ବୃଦ୍ଧି ପାଉଛି ?

ଏହି ଇଣ୍ଟରନେଟ୍ ଯୁଗରେ ଜଣେ ଯୁବକ ପାଖରେ ଏହି ସଂସାରର ସମସ୍ତ ବିଷୟରେ ଆଶ୍ଚର୍ଯ୍ୟଜନକ ଜ୍ଞାନ ଅଛି କିନ୍ତୁ ସେ ନିଜ ବିଷୟରେ ସଂପୂର୍ଣ୍ଣ ଅଜ୍ଞ । ତା ପାଖରେ ଜ୍ଞାନ ଅଛି କିନ୍ତୁ ବିଜ୍ଞତା ନାହିଁ । ଆଜିକାଲିର ସମୟରେ ମନୁଷ୍ୟ ନିଜକୁ ଛାଡ଼ି ଅନ୍ୟ ସମସ୍ତ ବିଷୟର ଜ୍ଞାନକୁ ଆହାରଣ କରିବା ପାଇଁ ସକ୍ଷମ । ଏହା ହିଁ ବିଡ଼ମ୍ବନା ।

ସ୍ୱାମୀ ବିବେକାନନ୍ଦ ତାଙ୍କ ଦୂରଦୃଷ୍ଟିରେ ଦେଖିଥିଲେ, ଶିକ୍ଷଣ ପ୍ରକ୍ରିୟା ଦୁଇଟି ସଂପୂର୍ଣ୍ଣ ଅଲଗା ଅଲଗା ଶିକ୍ଷା ମଧ୍ୟଦେଇ ଅଗ୍ରସର ହେବା ଉଚିତ : ଭୌତିକ ଶିକ୍ଷା ଏବଂ ଆଧ୍ୟାତ୍ମିକ ସଂସ୍କୃତି 'ଉଚ୍ଚଶିକ୍ଷା' ମଧ୍ୟରେ ଗତି କରିବା ଦରକାର । ଅଧିକନ୍ତୁ ସ୍ୱାମୀଜୀ କହିଲେ ଯେ, ମଣିଷ ନିଜ ସ୍ୱଭାବକୁ ଜୀବନରେ ଏହିପରି ସମନ୍ୱୟ କରିବା ଦରକାର ଯାହାଦ୍ୱାରା ଭୌତିକ ଶିକ୍ଷା ଧୀରେ ଧୀରେ ସଂପୂର୍ଣ୍ଣଭାବରେ ଉଚ୍ଚଶିକ୍ଷାରେ ରୂପାନ୍ତରିତ ହେବ । ଏହି ରୂପାନ୍ତରଣ ପ୍ରକ୍ରିୟାର ଅଭିକର୍ତ୍ତା (Agent) ଓ ପରିବର୍ତ୍ତନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରୁଥିବା ପଦାର୍ଥ (Catalyst) କୁ 'ମୂଲ୍ୟ' କୁହାଯାଏ । ଭୌତିକ ଶିକ୍ଷଣ ଔପଚାରିକ ବିଦ୍ୟାଳୟରେ ଥିବା ଶ୍ରେଣୀଗୃହ ପରିବେଶ ଦରକାର କରୁଥିବା ବେଳେ, ଉଚ୍ଚଶିକ୍ଷଣ ପାଇଁ ମଣିଷ ନିଜ ଜୀବନର ଅନୁଭବକୁ ସମୁଚିତ ଭାବରେ ସମାହିତ କରି ନିଜକୁ ନିଜେ ଶିକ୍ଷା ଦିଏ । ସ୍ୱାମୀଜୀ ମର୍ମସ୍ପର୍ଶୀ ଭାବରେ ପ୍ରଶ୍ନ କରନ୍ତି, "କ'ଣ ଉଚ୍ଚଶିକ୍ଷାର ଅର୍ଥ କେବଳ ଭୌତିକ ବିଜ୍ଞାନ ପଢ଼ିବା ଏବଂ ପ୍ରତିଦିନର ଉପଯୋଗି ବସ୍ତୁକୁ ଯନ୍ତ୍ର ମାଧ୍ୟମରେ ଉତ୍ପାଦନ କରିବା ?" ତଦୁପରାନ୍ତ ସେ ଉତ୍ତର ଦିଅନ୍ତି, "ଉଚ୍ଚଶିକ୍ଷାର ଉପଯୋଗର ଅର୍ଥ ହେଉଛି କିପରି ନିଜ ଜୀବନରେ ଆସୁଥିବା ସମସ୍ୟାର ସମାଧାନ କରିବା ।" ତଦନୁସାରେ ଆମ ଶିକ୍ଷା ପ୍ରଣାଳୀରେ ମୂଲ୍ୟବୋଧ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ପ୍ରକୃତରେ ଏହି ମୂଲ୍ୟବୋଧ କ'ଣ ଏବଂ କିପରି ଏହି ମୂଲ୍ୟବୋଧକୁ ବିଦ୍ୟାର୍ଥୀମାନଙ୍କୁ ଶିକ୍ଷା ଦିଆଯିବ ? ଏହି ବିଷୟରେ ଦୀର୍ଘ ସମୟଧରି ବହୁତ ଆଲୋଚନା ଓ ଯତ୍ନପୂର୍ବକ ଅନୁଧ୍ୟାନ କରାଯାଇ ଆସୁଅଛି । ବାସ୍ତବରେ ଯେଉଁ ପ୍ରକ୍ରିୟାଦ୍ୱାରା ମଣିଷ ମନର ଯୁଗଯୁଗ ଧରି ଆବିଷ୍କୃତ ହୋଇ ସଂଚିତ ଥିବା ଜ୍ଞାନକୁ ସଂକୁଚିତ କରି ଏବଂ ଔପଚାରିକ ବିଦ୍ୟାଳୟ ଶିକ୍ଷା ମାଧ୍ୟମରେ ପରବର୍ତ୍ତୀ ପିଢ଼ିକୁ ସ୍ଥାନାନ୍ତରିତ କରାଯାଏ, ତାହାକୁ ଭୌତିକ ଶିକ୍ଷା କୁହାଯାଏ । ସମଗ୍ର ଦୁନିଆର ଶିକ୍ଷାବିଦ୍‌ମାନେ ଆଜି ଏହା ସ୍ୱୀକାର କରୁଛନ୍ତି ଯେ ଏହି ଜ୍ଞାନରାଶିକୁ ବିଦ୍ୟାର୍ଥୀମାନଙ୍କୁ ସ୍ଥାନାନ୍ତରିତ କରିବା

ସଂଗେ ସଂଗେ ମଣିଷର ହୃଦୟ ଦ୍ୱାରା ଆବିଷ୍କୃତ ମହାନ୍ ଜ୍ଞାନକୁ ମଧ୍ୟ ସ୍ଥାନାନ୍ତରିତ କରିବା ଦରକାର । ଏହି ହୃଦୟ ଦ୍ୱାରା ଆବିଷ୍କୃତ ମହାନ୍ ଜ୍ଞାନ ମୂଲ୍ୟବୋଧର ସାରଭାଗ ।

ସ୍ୱାମୀଜୀ କହିଛନ୍ତି, "ମଣିଷ ମନରେ କିଛି ତଥ୍ୟକୁ ଭର୍ତ୍ତି କରିଦେବାର ଅର୍ଥ ଶିକ୍ଷା ନୁହେଁ ।" ଭୌତିକ ଶିକ୍ଷା ଏବଂ ମୂଲ୍ୟବୋଧ ଶିକ୍ଷାର ଏକତ୍ରିକରଣର ବାଞ୍ଛନୀୟତା ଉପରେ ସ୍ୱାମୀଜୀ ଗୁରୁତ୍ୱ ଦେଇଛନ୍ତି । ସେ କହିଛନ୍ତି, "ଆମେ ଏହିଭଳି ଶିକ୍ଷା ଚାହୁଁ ଯାହାଦ୍ୱାରା ଉତ୍ତମ ଚରିତ୍ର ଗଠନ ହେବ, ମାନସିକ ସାମର୍ଥ୍ୟ ବଢିବ ଏବଂ ବୁଦ୍ଧି ବିକଶିତ ହେବ ।" ପ୍ରକୃତ ଶିକ୍ଷା କହିଲେ ଅନ୍ତର୍ନିହିତ ମାନସିକ ଶକ୍ତିର ବୃଦ୍ଧି କରିବା, କିଛି ତଥ୍ୟର ସଞ୍ଚୟ ନୁହେଁ । ଶିକ୍ଷାର ଫଳାଫଳ ଏହା ହେବା ଦରକାର ଯାହାଫଳରେ ବିଦ୍ୟାର୍ଥୀ ନିଜେ ନିଜେ ବୁଝିପାରିବେ କ'ଣ ତାଙ୍କ ପାଇଁ ଭଲ ଏବଂ କ'ଣ ତାଙ୍କ ପାଇଁ ଖରାପ । ସ୍ୱାମୀଜୀ ଏହି ଶିକ୍ଷାକୁ (Man making education ) ମଣିଷ ଗଢ଼ିବା ଶିକ୍ଷା ବୋଲି ଅଭିହିତ କଲେ । ବାସ୍ତବିକ ଶିକ୍ଷା ମଣିଷକୁ ନିଜ ଗୋଡ଼ରେ ଛିଡ଼ା ହେବାପାଇଁ ପ୍ରେରଣା ଦେଇଥାଏ । ସବୁ ବିଦ୍ୟାର୍ଥୀମାନଙ୍କର ଏହି ମଣିଷ ଗଢ଼ିବା ଶିକ୍ଷା ଆଦର୍ଶ ହେବା ଉଚିତ ।

ବର୍ତ୍ତମାନର ଭୌତିକ ଶିକ୍ଷା କିମ୍ବା ଅବ୍ୟବହାରିକ ଶିକ୍ଷା ସହିତ ମୂଲ୍ୟବୋଧ ଶିକ୍ଷାକୁ ଯୋଡ଼ିବା ଅତ୍ୟନ୍ତ ଆବଶ୍ୟକ ମନେକରି ରାମକୃଷ୍ଣ ମିଶନ ଦ୍ୱାରା (୨୦୦୭-୦୮) ଶିକ୍ଷା ବର୍ଷରେ ପରୀକ୍ଷାମୂଳକ ଭାବେ ଏହି ମୂଲ୍ୟବୋଧାତ୍ମକ ପୁସ୍ତକଗୁଡ଼ିକୁ ଷଷ୍ଠ, ସପ୍ତମ, ଅଷ୍ଟମ ଏବଂ ନବମ ଶ୍ରେଣୀମାନଙ୍କରେ ଅରୁଣାଚଳ ପ୍ରଦେଶ, ତାମିଲ ନାଡୁ ଓ ପଶ୍ଚିମବଙ୍ଗରେ ଥିବା ମିଶନର ଶିକ୍ଷାନୁଷ୍ଠାନ ମାନଙ୍କରେ ପ୍ରଚଳନ କରାଯାଇଥିଲା । ପରେ ଏହି ବିଦ୍ୟାଳୟଗୁଡ଼ିକରେ ମତାମତ ସଂଗ୍ରହ ପାଇଁ ଆମର କିଛି ସନ୍ନ୍ୟାସୀଭାଇ ଯାଇଥିଲେ । ବାସ୍ତବିକ, ଶିକ୍ଷକ ଏବଂ ଛାତ୍ରମାନଙ୍କ ନିକଟରେ ଉତ୍ସାହପ୍ରଦ ମନୋଭାବ ଦେଖାଯାଇଥିଲା ।

ସ୍ୱାମୀ ବିବେକାନନ୍ଦଙ୍କର ୧୫୦ତମ ଜନ୍ମ ଜୟନ୍ତୀ ଅବସରରେ 'ମୁଁ କିପରି ହେବି ?' ପୁସ୍ତକଟିକୁ ସାମାନ୍ୟ ପରିବର୍ତ୍ତନ କରି ଅଷ୍ଟମ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ପାଇଁ ପ୍ରକାଶିତ କରି ଆମେ ଅତ୍ୟନ୍ତ ଆନନ୍ଦ ଅନୁଭବ କରୁଛୁ । ମୂଲ୍ୟବୋଧାତ୍ମକ ଶିକ୍ଷା ପ୍ରକଳ୍ପ ଅଧୀନରେ ଏହି ପୁସ୍ତକଟିକୁ ସ୍ୱାମୀ ବିବେକାନନ୍ଦଙ୍କ ସାର୍ଦ୍ଧଶତବର୍ଷ ଜନ୍ମୋତ୍ସବ ଉଦ୍ଦେଶ୍ୟରେ ଗଠିତ ସମିତିର ଆର୍ଥିକ ସହାୟତା ଯୋଗୁଁ ବିନା ମୂଲ୍ୟରେ ବିତରଣ କରାଯାଉଛି । ପୁସ୍ତକଟିର ନାମ ଦର୍ଶାଉଥିବା ପରି ବିଦ୍ୟାର୍ଥୀମାନେ ଭବିଷ୍ୟତରେ ନିଜକୁ ଗଢ଼ିତୋଳିବା ପାଇଁ ଆବଶ୍ୟକ ବିଷୟବସ୍ତୁ ଏଥିରେ ଯୋଗାଇ ଦିଆଯାଇଛି ।

ବିଷୟବସ୍ତୁ ଗୁଡ଼ିକ ସ୍ୱହସ୍ତ ଲିଖିତ ଦଲିଲ ଭଳି ପ୍ରସ୍ତୁତ କରାଯାଇଛି । ପ୍ରତ୍ୟେକ ବିଷୟରେ ଗୋଟିଏ କେନ୍ଦ୍ରବର୍ତ୍ତୀ 'ମୂଲ୍ୟବୋଧ' ଅଛି ଯାହା ମୁଖ୍ୟ ବାର୍ତ୍ତା ବହନ କରୁଛି । ତାହା ବ୍ୟତୀତ ଅନ୍ୟ ଚାରୋଟି 'ମୂଲ୍ୟବୋଧ' ବାର୍ତ୍ତାର ସ୍ୱର ମଧ୍ୟ ପ୍ରତ୍ୟେକ ବିଷୟରେ ଶୁଣାଯାଇଛି । ବିଜ୍ଞତା, ମନର ଏକାଗ୍ରତା, ହୃଦୟର ବିଶାଳତା, ଶିଷ୍ଟତାର ବିକାଶ ଏବଂ ରାଷ୍ଟ୍ରିୟତା ଜ୍ଞାନ ଓ ସର୍ବଧର୍ମ-ସମନ୍ୱୟ ଭଳି ଗୁଣଗୁଡ଼ିକୁ ପାଞ୍ଚୋଟି ବିଷୟ ଆକାରରେ ଅବତାରଣ କରାଯାଇଛି ।

ଏହି ପୁସ୍ତକ ରଚନା ପାଇଁ ଆମ ସଂଘର ଯେଉଁ ସନ୍ନ୍ୟାସୀଭାଇମାନେ ଏବଂ ବରିଷ୍ଠ ଅଧ୍ୟାପକମାନେ ନିଷ୍ଠାପର ସାହାଯ୍ୟ ସହଯୋଗ କରିଛନ୍ତି, ସେମାନଙ୍କ ନିକଟରେ ଆମେ କୃତଜ୍ଞ ।

ସ୍ନାନ ଯାତ୍ରା<br>
୪ ଜୁନ, ୨୦୧୨

ସାଧାରଣ ସଂପାଦକ<br>
ରାମକୃଷ୍ଣ ମଠ ଓ ରାମକୃଷ୍ଣ ମିଶନ<br>
ବେଲୁଡ଼ ମଠ

# ଶିକ୍ଷକଙ୍କୁ ପଦେ

୧. ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ମୂଲ୍ୟବୋଧ ଭାବନା ସୃଷ୍ଟି କରିବା ଲକ୍ଷ୍ୟରେ ପ୍ରତ୍ୟେକ ଅଧ୍ୟାୟଗୁଡ଼ିକୁ ପ୍ରସ୍ତୁତ କରାଯାଇଛି ।

କ) ଅଧ୍ୟାୟ-୧ : ବିଜ୍ଞତା

ଖ) ଅଧ୍ୟାୟ-୨ : ମନର ଏକାଗ୍ରତା

ଗ) ଅଧ୍ୟାୟ-୩ : ହୃଦୟକୁ ପ୍ରସାରିତ କରିବା

ଘ) ଅଧ୍ୟାୟ-୪ : ସାମାଜିକ ଓ ଜାତୀୟ ଭାବନାର ପରିଚୟ

ଙ) ଅଧ୍ୟାୟ-୫ : ଧର୍ମ ଧର୍ମ ମଧ୍ୟରେ ସଙ୍ଗତି ସ୍ଥାପନ

୨. ପ୍ରତ୍ୟେକ ଅଧ୍ୟାୟକୁ ସ୍ୱହସ୍ତ ଲିଖିତ ଦଲିଲର ନମୁନା ଭାବରେ ବିକଶିତ କରାଯାଇଛି । ଅଧ୍ୟାୟମାନଙ୍କରେ ପାଞ୍ଚଟି କରି ଉପଯୁକ୍ତ ଇଚ୍ଛାକୃତ ମୂଲ୍ୟବୋଧ ଶିକ୍ଷାକୁ ଉପସ୍ଥାପନ କରାଯାଇଛି । ସେଥିମଧ୍ୟରୁ ଚାରୋଟି ଗୌଣ ଏବଂ ଗୋଟିଏ ମୁଖ୍ୟ କିନ୍ତୁ ପ୍ରତ୍ୟେକ ମୂଲ୍ୟବୋଧ ପରସ୍ପର ସହିତ ଅଙ୍ଗାଙ୍ଗି ଭାବେ ଜଡ଼ିତ । ଆମେ ବିଶ୍ୱାସ କରୁ ଗୋଟିଏ 'ମୂଲ୍ୟ'କୁ ଛାଡ଼ିଲେ ଅନ୍ୟଟିର କୌଣସି ଗୁରୁତ୍ୱ ରହିବ ନାହିଁ ।

୩. ପ୍ରତ୍ୟେକ ଅଧ୍ୟାୟର ବର୍ଣ୍ଣନା ଶୈଳି ଭିନ୍ନ ଭିନ୍ନ ପ୍ରକାରର । ଆପଣମାନେ ଏହାକୁ ଶ୍ରେଣୀଗୃହରେ ଆଂଶିକ ପରିବର୍ତ୍ତନ କରି ଉପସ୍ଥାପନ କରି ପାରନ୍ତି । ଏହା ଆପଣମାନଙ୍କ ଉପରେ ନିର୍ଭର କରେ ।

୪. ଆପଣମାନଙ୍କୁ ଆମର ଅନୁରୋଧ ଶ୍ରେଣୀଗୃହରେ ଶିକ୍ଷାଦାନ କରିବାପୂର୍ବରୁ ଏହି ପୁସ୍ତକଟିକୁ ଅନେକ ଥର ସମ୍ପୂର୍ଣ୍ଣଭାବରେ ପଢ଼ନ୍ତୁ । ଏହା ଦ୍ୱାରା ଆପଣମାନେ ପୁସ୍ତକରେ ଦିଆଯାଇଥିବା ବର୍ଣ୍ଣନା ବିଷୟରେ ଭଲ ଧାରଣା ପାଇପାରିବେ ।

୫. ସ୍ୱାମୀ ବିବେକାନନ୍ଦ କହିଛନ୍ତି, "ଜ୍ଞାନ କେବଳ ଗୋଟିଏ ଉପାୟରେ ମିଳିପାରେ – 'ଅନୁଭବ ମାଧ୍ୟମରେ' ।" ଏହାକୁ ଧାରଣା କରି ଆପଣମାନେ ଅଧ୍ୟାୟମାନଙ୍କରେ ଥିବା ମୁଖ୍ୟ ଚରିତ୍ରମାନଙ୍କ ବିଷୟରେ ଛାତ୍ରଛାତ୍ରୀମାନଙ୍କୁ ଅବଗତ କରାନ୍ତୁ । ଅଧ୍ୟାୟମାନଙ୍କରେ ଥିବା ଚରିତ୍ରମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ମୂଲ୍ୟବୋଧ ପ୍ରତି ଛାତ୍ରଛାତ୍ରୀମାନେ ସମ୍ବେଦନଶୀଳ ହୋଇ ପାରିଲେ ସେମାନେ ସେମାନଙ୍କର ବ୍ୟକ୍ତିଗତ ଜୀବନରେ ଏହି ମୂଲ୍ୟବୋଧକୁ ପ୍ରକାଶ କରିପାରିବେ ।

୬. ସାଧାରଣ ଭ୍ରାନ୍ତ ଧାରଣା ଏହା ଯେ, ମୂଲ୍ୟବୋଧାତ୍ମକ ଶିକ୍ଷାର ଗୁରୁତ୍ୱ ମୂଳ ବିଷୟମାନଙ୍କ ତୁଳନାରେ ଗୌଣ । ଏହି ଧାରଣାକୁ ସମ୍ପୂର୍ଣ୍ଣଭାବରେ ମନରୁ ଦୂରେଇଦେବା ଉଚିତ । 'ମୂଲ୍ୟ' ଶିକ୍ଷା ବିଷୟରେ ଏହି ଭ୍ରାନ୍ତଧାରଣା ଆମର ମନଭାବକୁ ଆବୃତ୍ତ କରି ରଖେ । ଏହି ଧାରଣାକୁ ଆମେ ସନ୍ତୁଳିତ କରି ରଖିବା ଉଚିତ । ବାସ୍ତବିକ, ମୂଲ୍ୟବୋଧାତ୍ମକ ଶିକ୍ଷାକୁ ବିଦ୍ୟାଳୟ ପାଠ୍ୟକ୍ରମର ଏକ ମୁଖ୍ୟ ଅଂଶ ଭାବରେ ଶିକ୍ଷକ ଏବଂ ଅଭିଭାବକମାନେ ବିବେଚନା କରିବା ଉଚିତ । ଯେ ପର୍ଯ୍ୟନ୍ତ ଶିକ୍ଷକବନ୍ଧୁ ଏବଂ ଅଭିଭାବକମାନେ ଏହି ମୂଲ୍ୟବୋଧାତ୍ମକ ଶିକ୍ଷାକୁ ବୈମାତୃକଭାବ ପ୍ରଦର୍ଶନ କରୁଥିବେ, ସେ ପର୍ଯ୍ୟନ୍ତ ଆମର ସମସ୍ତ ଚେଷ୍ଟା ଲଙ୍ଗର୍ ପକାଇଥିବା ନୌକାରେ ଆହୁଲା ମାରିବା ସଦୃଶ ହେବ ।

୭. ଆମେମାନେ ଏହି ବହୁମୂଲ୍ୟ ବିଷୟକୁ ଚିରାଚରିତ ପରୀକ୍ଷା ଠାରୁ ମୁକ୍ତ ରଖିବା ଉଚିତ । ଶିକ୍ଷକ ଭାବରେ ଆପଣ ଏହି ଉଭୟ ଶିକ୍ଷା ମଧ୍ୟରେ ସୂକ୍ଷ୍ମ ସନ୍ତୁଳନ ରକ୍ଷା କରିବା ଉଚିତ । ବାସ୍ତବିକ, ଆପଣ ଏହି ମହାନ୍ ଶିକ୍ଷାକୁ ଭାରମୁକ୍ତ ଆନନ୍ଦ ପ୍ରଦାନକାରୀ ଶିକ୍ଷାଭାବରେ ବ୍ୟବହାର କରିବା ଦରକାର ଏବଂ ବାଧାମୁକ୍ତ ଶିକ୍ଷାରୁ କିପରି ଆନନ୍ଦ ଲାଭ କରିହେବ ଏହି ଅନୁଭୂତି ପିଲାମାନଙ୍କୁ ଦେବା ଉଚିତ ।

୮. ପିଲାମାନଙ୍କୁ ପ୍ରଭାବଶୀଳ ଭାବରେ ଶିକ୍ଷା ଦେବା ପାଇଁ ଆପଣମାନଙ୍କୁ ଅତିକମ୍‌ରେ ନିମ୍ନସ୍ଥ ପୁସ୍ତକ ଗୁଡ଼ିକୁ ପଢ଼ିବା ଦରକାର ।

କ) Lectures from Colombo to Almora; by Swami Vivekananda
(ଅଦ୍ୱୈତ ଆଶ୍ରମ, କୋଲକାତା)

ଖ) Universal Ethics and Moral Conduct; by Swami Vivekananda
(ଅଦ୍ୱୈତ ଆଶ୍ରମ, କୋଲକାତା)

ଗ) Swami Vivekananda on India and Her Problems
(ଅଦ୍ୱୈତ ଆଶ୍ରମ, କୋଲକତା)

ଘ) Hints on National Education; by Sister Nivedita
(ଉଦ୍‌ବୋଧନ, କୋଲକାତା)

ଙ) Civic and National Ideals; by sister Nivedita
(ଉଦ୍‌ବୋଧନ, କୋଲକାତା)

ଚ) Integral Education; by Swami Bhajanananda
(ରାମକୃଷ୍ଣ ବିଦ୍ୟାଳୟ, ମହିଶୂର)

୯. ରାମକୃଷ୍ଣ ମିଶନ, ଏହାର 'ମୂଲ୍ୟବୋଧ ଶିକ୍ଷା ପ୍ରକଳ୍ପ' ଅଧିନରେ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ପାଇଁ ଅନେକଗୁଡ଼ିଏ ପୁସ୍ତକ ରଚନା କରିଛି ଏବଂ ଏହି ବିଷୟକୁ ଶିକ୍ଷାଦାନ କରୁଥିବା ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କ ପାଇଁ ଏକ ପୁସ୍ତକ ମଧ୍ୟ ରଚନା କରିଛି, ଯାହାର ନାମ 'Value Education Teachers' Guidebook' । ଶିକ୍ଷକମାନଙ୍କ ଉଦ୍ଦିଷ୍ଟ ତଥ୍ୟ ସମ୍ୱଳିତ ଏହି ପୁସ୍ତକ (Guide Book)ରେ 'ମୂଲ୍ୟବୋଧ ଶିକ୍ଷା ପୁସ୍ତକ'ର ପ୍ରତ୍ୟେକ ବିଷୟରେ ଥିବା ସାରାଂଶ, ନୀତି-ଗଳ୍ପ, ଶିଶୁମାନଙ୍କ ନିମିତ୍ତ ପ୍ରଶ୍ନ ଓ ମହାପୁରୁଷମାନଙ୍କର ଉଦ୍ଧୃତ ବାଣୀ ଅଛି ।

୧୦. କୋମଳମତି ଶିଶୁମାନଙ୍କର ଗଳ୍ପ ଶୁଣିବାରେ ଅତ୍ୟଧିକ ରୁଚି ଥାଏ; ତେଣୁ ଶିକ୍ଷକ ଓ ଶିକ୍ଷୟିତ୍ରୀମାନେ ଏଥି ନିମନ୍ତେ ଏହି (Guide Book)ର ବ୍ୟବହାର କରନ୍ତୁ । 'ମୂଲ୍ୟବୋଧ ଶିକ୍ଷା ପୁସ୍ତକ' ରେ ବେଳେବେଳେ ଏକରୁ ଅଧିକ ଗଳ୍ପକୁ ନେଇ ଗୋଟିଏ 'ମୂଲ୍ୟ' ସମ୍ୱନ୍ଧରେ କୁହାଯାଇଛି, ଉଦାହରଣ ସ୍ୱରୁପ 'ସତ୍ୟ' । ଏହି ସତ୍ୟ ଉପରେ ଥିବା ବିଭିନ୍ନ ଗଳ୍ପକୁ ଶିକ୍ଷକମାନେ ସେମାନଙ୍କର ତଥ୍ୟ ସମ୍ୱଳିତ ପୁସ୍ତକ(Guide Book)ରୁ ସଂଗ୍ରହ କରି ପିଲାମାନଙ୍କୁ କହିପାରନ୍ତି ।

୧୧. ତଥ୍ୟ ସମ୍ବଳିତ ପୁସ୍ତକ (Guide Book)ରେ ଦିଆଯାଇଥିବା ଉପଯୁକ୍ତ ପ୍ରଶ୍ନଗୁଡ଼ିକୁ ନେଇ ଶ୍ରେଣୀଗୃହରେ ଛାତ୍ରଛାତ୍ରୀମାନଙ୍କ ଭିତରେ ଆଲୋଚନା କରନ୍ତୁ ଏବଂ ପରୀକ୍ଷାରେ ଏହି ପ୍ରଶ୍ନଗୁଡ଼ିକୁ ନେଇ ମୂଲ୍ୟାୟନ କରାଯାଇପାରେ ।

୧୨. ଆପଣମାନେ ତଥ୍ୟ ସମ୍ବଳିତ ପୁସ୍ତକ (Guide Book)ରେ ଥିବା ମୁଖବନ୍ଧ ଓ ପ୍ରସ୍ତାବନାକୁ ପଢ଼ିଲେ ନିଶ୍ଚିତଭାବରେ 'ମୂଲ୍ୟବୋଧ ଶିକ୍ଷା'ର ଗୁରୁତ୍ୱ ଓ ଯୁକ୍ତିଯୁକ୍ତତା ସମ୍ବନ୍ଧରେ ବିଶଦ ବିବରଣୀ ପାଇବେ । ଏଥିରେ ଥିବା ପରିଶିଷ୍ଟ-୨(Appendix-2) ରେ ଆତ୍ମ-ସମୀକ୍ଷାର ଏକ ତାଲିକା ଦିଆଯାଇଛି । ମୁଖବନ୍ଧ ଶେଷରେ ଦିଆଯାଇଥିବା ସାରଣୀ (Chart)ଦେଖନ୍ତୁ ଏବଂ ପିଲାମାନଙ୍କୁ କହନ୍ତୁ ଯାହା ସେମାନଙ୍କର ବ୍ୟକ୍ତିତ୍ୱର ବିକାଶରେ ସାହାଯ୍ୟ କରିବ ।

୧୩. ରାମକୃଷ୍ଣ ମିଶନ ଦ୍ୱାରା 'ମୂଲ୍ୟବୋଧ ଭିତ୍ତିକ ଶିକ୍ଷା' (SGVEP-Programme)ଦେଶର ବିଭିନ୍ନ ଅଞ୍ଚଳରେ ୨୦୧୨-୧୪ ଶିକ୍ଷା ବର୍ଷରେ ବହୁତ ବିଦ୍ୟାଳୟରେ ପ୍ରଚଳନ କରାଯାଇଛି । ସମାଜର ବିଭିନ୍ନ ସ୍ତରରେ ଏହା ଗଭୀର ପ୍ରଭାବ ପକାଇଛି । ଆନ୍ଧ୍ରପ୍ରଦେଶର ବିଜୟୱାଡାସ୍ଥିତ 'Shree Seven Hills EMH' ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀଙ୍କର ମତାମତ ଏଠାରେ ଉଲ୍ଲେଖ କରାଗଲା :

'ରାମକୃଷ୍ଣ ମିଶନ ଦ୍ୱାରା ପ୍ରସ୍ତୁତ-'ମୂଲ୍ୟବୋଧ ଭିତ୍ତିକ ଶିକ୍ଷା' ପାଠ୍ୟ ପୁସ୍ତକଗୁଡ଼ିକ ଅତ୍ୟନ୍ତ ମୂଲ୍ୟବାନ ଓ ଅନନ୍ୟ । ଶିଶୁମାନଙ୍କର ଜୀବନକୁ କୁସୁମିତ କରିବା ପାଇଁ ଏହା ବାସ୍ତବରେ ଅମୂଲ୍ୟ ଗ୍ରନ୍ଥ । ପିଲାମାନଙ୍କ ଉପରେ ପଡୁଥିବା ଏହାର ସୁପ୍ରଭାବ, ମୁଁ ବ୍ୟକ୍ତିଗତ ଭାବରେ ଯତ୍ନପୂର୍ବକ ଲକ୍ଷ୍ୟ କରିଛି । ସେମାନଙ୍କ ଆଚରଣରେ ଆସୁଥିବା ପରିବର୍ତ୍ତନ ମୁଁ ଦେଖିଛି ।

(ବର୍ତ୍ତମାନ ସମାଜକୁ ଲକ୍ଷ୍ୟ କଲେ) ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ସୌଭାଗ୍ୟକ୍ରମେ ରାମକୃଷ୍ଣ ମିଶନ ଦେଶର ରକ୍ଷା ନିମିତ୍ତ ଦେବଦୂତ ଭଳି ପ୍ରକଟହୋଇ ବିଦ୍ୟାଳୟ ସ୍ତରରେ ଶିଶୁମାନଙ୍କ ପାଇଁ 'ମୂଲ୍ୟବୋଧ ଭିତ୍ତିକ ଶିକ୍ଷା' କାର୍ଯ୍ୟକ୍ରମ ଆରମ୍ଭ କରିଛି । ଆଜିର ଶିଶୁମାନେ ଦେଶର ଭବିଷ୍ୟତ ନାଗରିକ । ସେମାନେ ଅତୀତର ଗୌରବାନ୍ୱିତ ଐତିହ୍ୟକୁ ଫେରାଇ ଆଣିବେ ଏବଂ ମାତୃଭୂମିର ଆଧ୍ୟାତ୍ମିକ ଓ ଧାର୍ମିକ ସଂସ୍କୃତି ଓ ସଭ୍ୟତାର ରକ୍ଷଣାବେକ୍ଷଣ କରିବେ । ସର୍ବଶେଷରେ, ଏହି କାର୍ଯ୍ୟକ୍ରମର ସଫଳତା କାମନା କରି ରାମକୃଷ୍ଣ ମିଶନକୁ ମୁଁ ମୋର ଆନ୍ତରିକ ଭକ୍ତି ଓ ସମ୍ମାନ ଜଣାଉଛି ।'

୧୪. ଆମର ବିଶ୍ୱାସ, ଆପଣମାନେ ପିଲାମାନଙ୍କୁ ଶିକ୍ଷା ଦାନ କରାଇବା ସମୟରେ ଉପଯୁକ୍ତ ଧ୍ୟାନ ଦେବେ । ନିଶ୍ଚିତ ଭାବରେ ଏହା ଆପଣମାନଙ୍କୁ ଏକ ବିଜ୍ଞ ନାଗରିକ ହେବାରେ ସାହାଯ୍ୟ କରିବ ଓ ବିଦ୍ୟାଳୟରୁ, ଗୃହରୁ ଏବଂ ସମାଜରୁ ଆପଣଙ୍କୁ ଶ୍ରଦ୍ଧା ଓ ସମ୍ମାନ ଆଣିଦେବ ।

ଗ

ସତ୍ୟ

ଧର୍ମ

ଶାନ୍ତି

ପ୍ରେମ

ଅହିଂସା

## ସୂଚୀପତ୍ର

ପୃଷ୍ଠା


୧. ଆଇସକ୍ରିମ୍ ଠାରୁ ମଧୁର ୧

୨. ତୁମ ପାଇଁ ଛୋଟ ଉପହାରଟିଏ ୧୧

୩. ମୋତେ ଗୋଟିଏ ପଦକ ମିଳିସାରିଛି ୨୧

୪. ମୋ ଭାରତ – ଶାଶ୍ୱତ ଭାରତ ୩୧

୫. ଏଠାରେ ମୁଁ ରହିବି ୪୧

୬. ପରିଶିଷ୍ଟ ୫୮



150th BIRTH ANNIVERSARY CELEBRATIONS

BE AND MAKE

Swami Vivekananda 1863-1902

ଯଦି ତୁମେ ପାଞ୍ଚଟି ଆଦର୍ଶ ମତ କିମ୍ବା ବିଶ୍ୱାସକୁ ନିଜ ଜୀବନରେ ଓ ଚରିତ୍ରରେ ସମୁଚିତ ଭାବରେ ସମାହିତ କରିପାରିଛ, ତା' ହେଲେ ଗୋଟିଏ ଲାଇବ୍ରେରୀରେ ଥିବା ସମସ୍ତ ପୁସ୍ତକଗୁଡ଼ିକୁ ମୁଖସ୍ଥ କରିଥିବା ବ୍ୟକ୍ତି ଅପେକ୍ଷା ତୁମେ ଅଧିକ ଶିକ୍ଷିତ ।

''ଯଥା ଖରଶ୍ଚନ୍ଦନଭାରବାହୀ ଭାରସ୍ୟବେତ୍ତା ନ ତୁ ଚନ୍ଦନସ୍ୟ''

ଅର୍ଥାତ୍ - ଚନ୍ଦନ କାଠକୁ ବୋହୁଥିବା ଗଧ କେବଳ ଏହାର ଭାର ଅନୁଭବ କରେ କିନ୍ତୁ ଚନ୍ଦନ କାଠର ପ୍ରାଧାନ୍ୟ ବୁଝିପାରେ ନାହିଁ ।

- ସ୍ୱାମୀ ବିବେକାନନ୍ଦ









ଶ୍ରୀଚୈତନ୍ୟ ଶ୍ରୀଶଙ୍କରାଚାର୍ଯ୍ୟ ଶ୍ରୀମାଧ୍ୱାଚାର୍ଯ୍ୟ







ସ୍ୱାମୀ ବ୍ରହ୍ମାନନ୍ଦ ସ୍ୱାମୀ ତୁରୀୟାନନ୍ଦ ସ୍ୱାମୀ ପ୍ରେମାନନ୍ଦ

ଦୁଇ ଚକ୍ଷୁର ଭ୍ରୂଲତା ମଧ୍ୟରେ ଆଧ୍ୟାତ୍ମିକ ଜ୍ଞାନ ଚକ୍ଷୁ ଅବସ୍ଥିତ । ଯେତେବେଳେ ଏହାର ଦୃଷ୍ଟିଶକ୍ତି ଖୋଲିଯାଏ, ମଣିଷ ମନରେ ଆନନ୍ଦର ସ୍ରୋତ ପ୍ରବାହିତ ହୁଏ । ସମଗ୍ର ବିଶ୍ୱ ଆନନ୍ଦରେ ବିଲୀନ ହେବା ପରି ଜଣା ପଡ଼େ ।

– ସ୍ୱାମୀ ବ୍ରହ୍ମାନନ୍ଦ



ସମଗ୍ର ବିଶ୍ୱରେ ବହୁ ଧାର୍ମିକ ମତବାଦ ଅଛି । ଯେତେ ମତ ସେତେ ପଥ । କିନ୍ତୁ ସମସ୍ତେ ଭାବନ୍ତି ନିଜ ନିଜର ମତବାଦ ସଂପୂର୍ଣ୍ଣ ଠିକ୍ । ସମସ୍ତେ କୁହନ୍ତି ଆମ ନିଜ ନିଜର ଘଣ୍ଟା ଠିକ୍ ଚାଲୁଅଛି ।

ଝଗଡ଼ା କର ନାହିଁ । ତୁମେ ଯେପରି ନିଜ ମତକୁ ସଂପୂର୍ଣ୍ଣ ଠିକ୍‌ଭାବି ଏହା ଉପରେ ଦୃଢ଼, ସେହିପରି ଅନ୍ୟମାନେ ନିଜ ନିଜର ମତବାଦ ଓ ବିଶ୍ୱାସକୁ ଯେପରି ଦୃଢ଼ ଭାବରେ ଧରି ରଖିପାରିବେ ସେମାନଙ୍କୁ ମଧ୍ୟ ସାହାଯ୍ୟ କର ।

– ଶ୍ରୀରାମକୃଷ୍ଣ

**ଅଧ୍ୟାୟ-୧**

# ଆଇସକ୍ରିମ୍ ଠାରୁ ମଧୁର

**ସୁଧା** - ରଘୁ, ତୁ ଗାଧୁଆ ପାଧୁଆ ସାରି ଭଲ ଜାମା ପ୍ୟାଣ୍ଟ ପିନ୍ଧି ଦେ । ସିଦ୍ଧାର୍ଥ ମାମୁଁ ଏବେ ଆସିବେ, ତାଙ୍କୁ ତୁ ସ୍ୱାଗତ ଜଣାଇବୁ। ବୁଝିଲୁ, ଯଥା ଶୀଘ୍ର ଯାଆ । ଶୁଣୁ, ରାଧିକା ବୋଧେ ଉପର ମହଲାରେ ତା' ସାଙ୍ଗ ସରିତା ସହିତ ଏ ପର୍ଯ୍ୟନ୍ତ ଗପୁଛି । ସେ ଦୁହିଁଙ୍କୁ ତଳକୁ ଡାକିଦେଲୁ । ମୋତେ ଟିକିଏ ରୋଷେଇରେ ସାହାଯ୍ୟ କରିବେ ।

**(ରଘୁ ପ୍ଲାଷ୍ଟିକ୍ ଅକ୍ଷର ସବୁ ଯୋଡ଼ି ନୂଆ ନୂଆ ଶବ୍ଦ ଗଠନ କରୁଥିଲା ଏବଂ ଖେଳୁଥିଲା । ସେ ଖେଳ ବନ୍ଦକରି ଉପର ମହଲାକୁ ଚାଲିଗଲା । ଦେଖିଲା ତା'ଭଉଣୀ ରାଧିକା, ସରିତା ସହ ଏକ ଗୁରୁତ୍ୱପୂର୍ଣ୍ଣ ଆଲୋଚନାରେ ବ୍ୟସ୍ତ )**

**ରାଧିକା** - ପ୍ରକୃତରେ ଶିକ୍ଷକ ଆମକୁ ଯାହା କହିଥିଲେ ସେଥିରେ ବାସ୍ତବତା ଅଛି ! ସେ କହିଥିଲେ, ଯେତେବେଳେ ମଣିଷ ନିଜ ପାଇଁ ଚିନ୍ତା କଲା, ସ୍ୱାଧୀନଭାବରେ ଚିନ୍ତା କଲା, ଗତାନୁଗତିକ ଚିନ୍ତା ଠାରୁ ଭିନ୍ନ ଚିନ୍ତା କଲା, ସେତେବେଳେ ସମାଜର ସାମଗ୍ରୀକ ବିକାଶ ଘଟିଲା । ସେଥିପାଇଁ ଆମ ସାର୍ ଗାଲିଲିଓ ଏବଂ କୋପର ନିକସ୍ଙ୍କ ଉଦାହରଣ ଦେଇଥିଲେ । ସେହି ସମୟରେ ଲୋକମାନେ ଭାବୁଥିଲେ ପୃଥିବୀ ସମତଳ ଏବଂ ଏହା ସୌରମଣ୍ଡଳର କେନ୍ଦ୍ରସ୍ଥଳ । ଗାଲିଲିଓ ଯଦି ଏହାକୁ ବିନା ବିଚାରରେ ଅନ୍ଧ ଭାବରେ ଗ୍ରହଣ କରି ନେଇ ଥାଆନ୍ତେ, ତେବେ ସେ ପୃଥିବୀ ଗୋଲ ବୋଲି ଆବିଷ୍କାର କରିବା ପାଇଁ ସମର୍ଥ ହୋଇ ନ ଥାନ୍ତେ ଏବଂ କୋପରନିକସ୍ ସୂର୍ଯ୍ୟ ସୌର ଜଗତର କେନ୍ଦ୍ର ସ୍ଥଳ ବୋଲି ଆବିଷ୍କାର କରିବା ପାଇଁ ସମର୍ଥ ହୋଇ ନ ଥାନ୍ତେ ।

ତେଣୁ ମୁଁ ବୁଝିଲି, ଅନ୍ଧଭାବରେ ଗ୍ରହଣ କରିବା ଅପେକ୍ଷା ସ୍ୱାଧୀନ ଚିନ୍ତା ବହୁ ପରିମାଣରେ ଫଳପ୍ରଦ । ଦେଖ ସରିତା, ସାରଙ୍କ ଏହି ଉକ୍ତିଟି ମୋ ଚିନ୍ତାଧାରାକୁ ବହୁ ପରିମାଣରେ ପରିଷ୍କାର କରିଦେଇଛି । ପ୍ରଚଳିତ ପ୍ରଥା ଏବଂ ଗତାନୁଗତିକ ଚିନ୍ତାଧାରାକୁ ଅବଜ୍ଞା କରିଥିବାରୁ ମାନବଜାତି ଆଜି ଏତେ ବଡ଼ ବଡ଼ ପଦକ୍ଷେପ ନେଇ ପାରିଛି ।

**ସରିତା** - ଓଃ, ରାଧିକା, ପୁଣି ସେମିତିକା କଥା ! ତୋ ସହିତ ତର୍କ କରି ମୁଁ ଜିତି ପାରିବି ନାହିଁ କି ତୋ ଭଳି ତର୍କ ମଧ କରି ପାରିବି ନାହିଁ, କିନ୍ତୁ ଗୋଟିଏ କଥା ମୋତେ ଆଶ୍ଚର୍ଯ୍ୟ ଲାଗୁଛି ଅନେକ କ୍ଷେତ୍ରରେ ଆମ ଦୁହିଁଙ୍କର ମତ ଅଲଗା ହେଲେବି, ଆମେ ଏତେ ଘନିଷ୍ଠ ସାଙ୍ଗ ହେଲେ କିପରି ? କେଉଁ ଜିନିଷ ଆମ ଦୁହିଁଙ୍କୁ ଏପରି ବାନ୍ଧି ରଖିଛି ? ସତରେ ତୋ ସହିତ ଏପରି ଯୁକ୍ତି କରିବାକୁ ମୁଁ ଆଦୌ ଭଲ ପାଏ ନାହିଁ । ଠିକ୍ ଅଛି, ତୁ ତୋ ବାଟରେ ଥା.....

**ରାଧିକା** - ମୋ ସହିତ ଏକମତ ହେବାପାଇଁ ମୁଁ ତୋତେ କହୁନାହିଁ । ମୋତେ ଭଲ ଲାଗିବ, ତୁ ଯଦି ସ୍ୱାଧୀନ ଭାବରେ ତୋ ନିଜ ମତକୁ ଧରି ରଖିବୁ ଏବଂ ତା'ଉପରେ ତୋର ଅଧିକାର ସାବ୍ୟସ୍ତ କରିବୁ । ବାରମ୍ବାର ମୋର......

**ରଘୁ** - ମିସ୍ ସ୍ୱାଧୀନ ଚିନ୍ତକ ଓ ମିସ୍ ଆଜ୍ଞାକାରୀ, ଆପଣମାନଙ୍କୁ ମା' ଡାକୁଛନ୍ତି । ତଳକୁ ଯାଇ

ରୋଷେଇ କାମରେ ତାଙ୍କୁ ସାହାଯ୍ୟ କରନ୍ତୁ ।

**ସୁଧା** – (ରୋଷେଇ ଘର ଭିତରୁ) ତୁ ଏତେ ସମୟ ଯାଏ ବୁଲୁଛୁ ? କେତେବେଳେ ଗାଧୋଇବୁ ? ରାଧିକା....

**ରାଧିକା** – ଆସୁଛି ମା'....

**(ସିଦ୍ଧାର୍ଥ ବୈଠକଖାନାରେ ବସିଛନ୍ତି । ପିଲାମାନେ ତାଙ୍କୁ ଘେରି ବସିଛନ୍ତି )**

**ରଘୁ** – ମାମୁଁ, ଏହି ଉପହାରଟି ପାଇଁ ଆପଣଙ୍କୁ ବହୁତ ଧନ୍ୟବାଦ । ମୋ ଜନ୍ମଦିନରେ ମୁଁ ଅନେକ ସିଡ଼ି (CD) ଉପହାର ପାଇଛି । ଏହି ଲାପ୍‌ଟପ୍‌ରେ ମୁଁ ସେଗୁଡ଼ିକୁ ଦେଖିବି । ମୋ ପାଖରେ ମଧ୍ୟ ଅନେକ ପ୍ରକାର ଖେଳ ସିଡ଼ି ଅଛି ।

**ସିଦ୍ଧାର୍ଥ** – ହଁ, ଲାପ୍‌ଟପ୍‌ଟିର ସଦ୍‌ବ୍ୟବହାର କର । ମୁଁ ତୋ ଜନ୍ମ ଦିନକୁ ଆସିପାରି ନ ଥିଲି । ତେଣୁ ଏହା ତୋ ପାଇଁ ବିଳମ୍ବିତ ଉପହାର ।

**ରାଧିକା** – ମାମୁଁ, କିଛି ବର୍ଷ ଆଗେ ଆମେ ତାକୁ ଯେଉଁ ଖେଳନା ସବୁ ଦେଉଥିଲୁ ସେ ଅଳ୍ପ ସମୟ ମଧ୍ୟରେ ସେଗୁଡ଼ିକୁ ଭାଙ୍ଗି ଖଣ୍ଡ ଖଣ୍ଡ କରି ଦେଉଥିଲା । ବର୍ତ୍ତମାନ ସେ ଷଷ୍ଠ ଶ୍ରେଣୀରେ ପଢ଼ିଲାଣି ତ ....ତେଣୁ ବୟସ୍କଙ୍କ ପରି ଜଣା ପଡୁଛି ।

**ହିମେଶ** – ଏଣିକି ତୋ ସାନଭାଇକୁ ତୁ ଆଉ ବିଦ୍ରୁପ କରିବୁ ନାହିଁ । ଭାଇ ଭଉଣୀଙ୍କ ମଧ୍ୟରେ ଏପରି ଝଗଡ଼ା ଠିକ୍ ନୁହେଁ । ତୁମେ ଜାଣ ସିଦ୍ଧାର୍ଥ, ମୁଁ ବିଶ୍ୱାସ କରେ ବେଳେବେଳେ ଉପହାସପୂର୍ଣ୍ଣ କଥା ପରମାଣବିକ ପ୍ରତିକ୍ରିୟାଠାରୁ ମଧ୍ୟ ଅଧିକ ଭୟଙ୍କର ହୋଇଯାଏ । ଦେଖ ପିଲାମାନେ, ଆଜିଠାରୁ ଚାଳିଶ ବର୍ଷଧରି ମୁଁ ଆଉ ତୁମ ସିଦ୍ଧାର୍ଥ ମାମୁଁ ଉଭୟେ ଉଭୟଙ୍କର ଘନିଷ୍ଠ ବନ୍ଧୁ ଭାବରେ ରହି ଆସିଛୁ । ମୋ ଜାଣିବା ଭିତରେ ଆମେ ପରସ୍ପରକୁ ନିହାତି ଥରକ ପାଇଁ ମଧ୍ୟ କୌଣସି ପ୍ରକାର ଆଘାତ ଦେଇ ନାହୁଁ ।

**ସିଦ୍ଧାର୍ଥ** – ଆମର ଏହି ଗୌରବମୟ ବନ୍ଧୁତ୍ୱ ପାଇଁ ମୋ ଅପେକ୍ଷା ତୁମ ବାପାଙ୍କର ଅବଦାନ ବେଶି ।

**ସରିତା** – ମାମୁଁ, ମୁଁ ଆପଣ ଦୁହିଁଙ୍କୁ ଗୋଟାଏ କଥା ପଚାରିବାକୁ ଚାହେଁ । ଆପଣମାନଙ୍କ ନିଜ ନିଜ

### ପର୍ଯ୍ୟବେକ୍ଷଣ ଶକ୍ତି

ଥରେ ଜଣେ ଭେଷଜ ପ୍ରାଧ୍ୟାପକ ତାଙ୍କ ଛାତ୍ରମାନଙ୍କୁ କହିଲେ ଯେ ଜଣେ ଶଲ୍ୟ ଚିକିତ୍ସକର ଦୁଇପ୍ରକାର ଦକ୍ଷତା ଥିବା ଦରକାର: ଘୃଣାଭାବର ଅଭାବ ଏବଂ ପର୍ଯ୍ୟବେକ୍ଷଣ ଶକ୍ତି । ସେ କିଛି ତରଳ ବାନ୍ତି ପଦାର୍ଥରେ ଗୋଟିଏ ଆଙ୍ଗୁଠି ବୁଡ଼ାଇଲେ ଏବଂ ଚାଟିଲେ । ଏହିପରି କରିବା ପାଇଁ ପ୍ରତ୍ୟେକ ଛାତ୍ରଙ୍କୁ କହିଲେ । ଏହା ଦେଖି ସେମାନେ ଚକିତ ହୋଇଗଲେ ଏବଂ ପଛ ଘୁଞ୍ଚା ନ ଦେଇ, ତାହା ପାଳନ କରିବାକୁ ଅଗ୍ରସର ହେଲେ । ପ୍ରାଧ୍ୟାପକ ହସି ହସି କହିଲେ, ''ପିଲାମାନେ ତୁମେ ନିଶ୍ଚିତ ଭାବେ ଘୃଣା ବିରହିତ, କିନ୍ତୁ ତୁମେମାନେ ପର୍ଯ୍ୟବେକ୍ଷଣ ଶକ୍ତି ବଢ଼ାଇବା ଉଚିତ । ତୁମେ କେହି ଲକ୍ଷ୍ୟ କରି ପାରିଲ ନାହିଁ ଯେ ମୁଁ ମୋର ତର୍ଜନିଟି ତରଳ ପଦାର୍ଥରେ ବୁଡ଼ାଇଲି ଏବଂ ମୋର ମଝି ଆଙ୍ଗୁଠିକୁ ଚାଟିଲି ।"

ଜୀବନକୁ ନେଇ ଆପଣମାନେ କ'ଣ ଖୁସି ଅଛନ୍ତି ?

**ସିଦ୍ଧାର୍ଥ** – ହିମେଶ, ଆଜିକାଲିର ପିଲାମାନେ ଏମିତି ପ୍ରଶ୍ନ ପଚାରୁଛନ୍ତି ଯେ, ଉତ୍ତର ଦେବା ପାଇଁ ବୋଧହୁଏ ଆମକୁ ପ୍ରଶିକ୍ଷଣ ନେବାକୁ ପଡ଼ିବ । ସରିତା, ବୋଧହୁଏ ତୁମେ ଅଷ୍ଟମ ଶ୍ରେଣୀରେ ପଢୁଛ, ନୁହେଁ କି ? ଆଉ ଏହି ଝିଅ ଆମକୁ ପଚାରୁଛି, ତୁମେ କ'ଣ ତୁମ ନିଜ ଜୀବନକୁ ନେଇ ଖୁସି ଅଛ? ହେ ଭଗବାନ ! ହିମେଶ, ତୁମେ ତା'ର ଉତ୍ତର ଦେଉନାହଁ କାହିଁକି ?

**ହିମେଶ** – ସରିତା, ତୁ ଯଦି ଗୋଟିଏ ଶବ୍ଦରେ ମୋ ଠାରୁ ଉତ୍ତର ଚାହୁଁଛୁ, ତା'ହେଲା, ''ହଁ'' । ଆଉ ମୁଁ ମଧ୍ୟ ନିଶ୍ଚିତ ଯେ ସିଦ୍ଧାର୍ଥ ଏଥିରେ ଏକମତ ହେବ । କିନ୍ତୁ, ସିଦ୍ଧାର୍ଥ, ତୁମେ କିଛି ସମୟ ଏହି ପିଲାମାନଙ୍କ ସହିତ ରହି ତାଙ୍କୁ କୁହ, କାହିଁକି ଆମ ଜୀବନଟା ସୁଖମୟ ଏବଂ କିପରି ଏହି ସୁଖମୟ ଜୀବନରେ ଆମେ ପୂର୍ଣ୍ଣତା ଆଣିପାରିଛେ । ସେମାନେ ଜାଣିବା ଉଚିତ ଯେ ଏହା ଆମ ଭାଗ୍ୟ ବା ଅଦୃଷ୍ଟରୁ ପ୍ରାପ୍ତ ନୁହେଁ, ଏଥିପାଇଁ ଆଜି ପର୍ଯ୍ୟନ୍ତ ଆମକୁ ଜୀବନର ଗତିପଥରେ ପ୍ରତି ମୁହୂର୍ତ୍ତରେ ସଂଘର୍ଷ କରିବାକୁ ପଡ଼ିଛି । ତୁମେ ତାଙ୍କ ସହିତ କଥାବାର୍ତ୍ତା କରିବା ଭିତରେ ମୁଁ ଦେଖୁଛି ସୁଧା କାଳେ ଭୋଜନ ପରିବେଷଣରେ ମୋ ସାହାଯ୍ୟ ଚାହିଁପାରେ ।


(ଆଲବର୍ଟ ଆଇନ୍‌ଷ୍ଟାଇନ୍)

**ସିଦ୍ଧାର୍ଥ** – ପିଲାମାନେ ଶୁଣ । ଦୁଇଟି ଜୀବନ ମୋ ଜୀବନକୁ ପ୍ରଭାବିତ କରିଛି । ପ୍ରଥମଟି ହେଲା – ମୁଁ ଡକ୍ଟର ଆଲବର୍ଟ ଆଇନ୍‌ଷ୍ଟାଇନଙ୍କ ସହିତ ପ୍ରିନ୍‌ସଟନ୍ ବିଶ୍ୱବିଦ୍ୟାଳୟରେ ଆଠବର୍ଷ କଟାଇଛି । ଆଇନ୍‌ଷ୍ଟାଇନ୍‌ଙ୍କର ବିଶ୍ୱପ୍ରତି ଯେଉଁ ଗଭୀର ଶ୍ରଦ୍ଧା ଥିଲା, ତାହା ମୁଁ ତାଙ୍କଠାରୁ ଆହରଣ କରିଛି । **''ନିଜ ଭିତରେ କିପରି ପ୍ରଶ୍ନ ପଚାରିବାର ପ୍ରବଣତା ଜାଗ୍ରତ ହେବ, ପ୍ରତ୍ୟେକ ଜିନିଷକୁ ନୂତନ ଭାବରେ କିପରି ଦେଖିବା, ଗୋଟିଏ ଜିନିଷକୁ ସମଭାବେ ଦୁଇଥର ନ ଦେଖିବା ଏବଂ ନିଜ ଚତୁଃପାର୍ଶ୍ୱରେ ଥିବା ପ୍ରତ୍ୟେକ ଜିନିଷ ମଧ୍ୟରେ କିପରି ସର୍ବଦା ଏକ ନିର୍ଦ୍ଦିଷ୍ଟ କ୍ରମ ଓ ସୌନ୍ଦର୍ଯ୍ୟ ଅନ୍ୱେଷଣ କରିବା,''** ଇତ୍ୟାଦି ସେ ମୋତେ ଶିକ୍ଷା ଦେଇଥିଲେ ।


(ସ୍ୱାମୀ ରଙ୍ଗନାଥାନନ୍ଦ)

ଯେଉଁ ଦ୍ୱିତୀୟ ଜୀବନ ଦ୍ୱାରା ମୁଁ ପ୍ରଭାବିତ – ସେ ହେଉଛନ୍ତି ରାମକୃଷ୍ଣ ମିଶନର ସନ୍ନ୍ୟାସୀ ସ୍ୱାମୀ ରଙ୍ଗନାଥାନନ୍ଦ । ସେ ସ୍ୱାମୀ ବିବେକାନନ୍ଦଙ୍କ ଚିନ୍ତାଧାରା ସହିତ ମୋତେ ଅବଗତ କରାଇଥିଲେ । ତାହା କି ଆଶ୍ଚର୍ଯ୍ୟ ପ୍ରକାର ଆନ୍ଦୋଳନ ଥିଲା ! ସ୍ୱାମୀଜୀଙ୍କ ଚିନ୍ତାଧାରା, ଜୀବନର ଉଦ୍ଦେଶ୍ୟ ନିର୍ଣ୍ଣୟ ପାଇଁ ମୋ ମନରେ ଏକ ଗଭୀର ବିଶ୍ୱାସ

ଜାଗରଣ କରିଥିଲା । ମୋ ଜୀବନର ଏକ ମହାନ୍ ଉଦ୍ଦେଶ୍ୟ ଅଛି । ନିଜକୁ କିପରି ସମ୍ମାନ ଦିଆଯାଏ, ମୁଁ ତାଙ୍କଠାରୁ ଶିକ୍ଷା କଲି । ମୋ ଶରୀରର ଅନ୍ତଃସ୍ଥଳରେ ରହିଥିବା ଦିବ୍ୟାଲୋକଟି ଚିର ଉଜ୍ଜ୍ୱଳ ଏବଂ ଏହି ଆଲୋକଟି ସର୍ବଦା ମୋ ଚିନ୍ତାଧାରା, ଭାବନା, ବାଣୀ ଏବଂ କର୍ମଦ୍ୱାରା ପ୍ରକାଶିତ ହେବା ପାଇଁ ମୁଁ ଚେଷ୍ଟା କରୁଛି । ସ୍ୱାମୀଜୀଙ୍କର ବହିଗୁଡ଼ିକରୁ ମୁଁ ଶିକ୍ଷା ଲାଭକଲି – ମୋ ଜୀବନକୁ ଏପରି ଭାବରେ ସଜାଡ଼ିବି ଯେପରି ଏହି ଦିବ୍ୟ ଆଲୋକ ମୋର ବ୍ୟକ୍ତିତ୍ୱ ମଧ୍ୟ ଦେଇ ପ୍ରକାଶିତ ହେବ । ତୁମେ ଜାଣ ରଘୁ, ତୁମ ବାପା ହିଁ ମୋତେ ସ୍ୱାମୀ ରଙ୍ଗନାଥାନନ୍ଦଙ୍କ ସହିତ ପରିଚିତ କରାଇଥିଲେ ।

> **ପ୍ରକୃତ ଶିକ୍ଷା**
>
> କିଛି ସମୟ ପାଇଁ ମହାନ୍ ବ୍ୟକ୍ତିଙ୍କ ସହିତ ଅନ୍ତରଙ୍ଗ ହୋଇ ରହିବା ହିଁ ଶ୍ରେଷ୍ଠ ଶିକ୍ଷା ।
>
> ଜନ୍ ବୁଚାନନ୍
>
> ସ୍କଟିସ୍ ରାଜନୀତିଜ୍ଞ ଓ ଲେଖକ

**ରାଧିକା** – ମାମୁଁ, ଆପଣ ସ୍ୱାମୀଜୀଙ୍କ ଭାବଧାରାରେ ପ୍ରଭାବିତ ହେବା ପୂର୍ବରୁ ନିଜ ଭିତରେ ଏକ ବୈଜ୍ଞାନିକ ମନୋଭାବର ବିକାଶ ଘଟାଇଥିଲେ । ଆପଣ ଆଇନ୍‌ଷ୍ଟାଇନ୍‌ଙ୍କୁ ଭେଟିବା ପୂର୍ବରୁ ଯଦି ସ୍ୱାମୀଜୀଙ୍କ ଭାବଧାରାରେ ପ୍ରଭାବିତ ହୋଇ ଥାଆନ୍ତେ ତେବେ କ'ଣ ଆପଣଙ୍କ ଜୀବନଶୈଳୀ ବଦଳି ଯାଇ ଥାଆନ୍ତା ?

**ସିଦ୍ଧାର୍ଥ** – ମୁଁ ପ୍ରକୃତରେ ସେ କଥା କହି ପାରିବି ନାହିଁ । କିନ୍ତୁ ଏତିକି ମୁଁ ଜାଣିଛି – ସ୍ୱାମୀଜୀଙ୍କ ଚିନ୍ତାଧାରା ଓ ବୈଜ୍ଞାନିକ ମନୋଭାବ ମଧ୍ୟରେ ସାଦୃଶ୍ୟ ରହିଛି ଏବଂ ଏହାଠାରୁ ଆହୁରି ଅଧିକ କିଛି...

**ରାଧିକା** – ମାମୁଁ, ଆପଣ କ'ଣ କହିବାକୁ ଚାହାଁନ୍ତି ଯେ ଆପଣଙ୍କର ପ୍ରଶ୍ନ ପଚାରିବାର ଆବେଗ ଏବଂ ଧାର୍ମିକ ବିଶ୍ୱାସ ମଧ୍ୟରେ ଦ୍ୱନ୍ଦ୍ୱ ପରିଲକ୍ଷିତ ହୋଇ ନାହିଁ ?

**ସିଦ୍ଧାର୍ଥ** – ବାଃ ! ତୁମେ କେତେ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନା ! ତୁମପରି ଯୁବ ବ୍ୟକ୍ତିତ୍ୱ ଉପରେ ମୁଁ ଅତ୍ୟନ୍ତ ପ୍ରୀତ, ଯେଉଁମାନେ ସ୍ୱାଧୀନ ଭାବରେ ଚିନ୍ତା କରି ଏବଂ ନିର୍ଭୀକ ଭାବରେ ପ୍ରଶ୍ନ ପଚାରି ପାରନ୍ତି ! ସାରା ଜୀବନ ପାଇଁ ଏହିପରି ସ୍ୱଭାବଟିକୁ ଧରି ରଖ । କାରଣ ମୁଁ ମଧ୍ୟ ମୋ ଭିତରେ ଏହିପରି ଆତ୍ମବିଶ୍ୱାସ ରଖି ଥିବାରୁ ମୋ ଜୀବନରେ କେବେ ହେଲେ ନିରସ ଅନୁଭବ କରି ନାହିଁ ।

> **ପଚାର, ନିରୀକ୍ଷଣ କର ଏବଂ ଚିନ୍ତା କର – ତୁମେ ତୁମର ଉତ୍ତର ପାଇବ**
>
> ଜେମ୍‌ସ ୱାଟ୍ ପିଲା ଥିଲା ବେଳେ ଦେଖିଲେ କେଟ୍‌ଲିର ଗରମ ବାଷ୍ପ ଢ଼ାଙ୍କୁଣିକୁ ବାରମ୍ବାର ଉଠାଇ ଦେଉଛି । ସେ ବୁଝିବାକୁ ଚେଷ୍ଟା କଲେ ଏପରି କାହିଁକି ହେଉଛି । ସେ ବୁଝିଲେ ଯେ ଫୁଟନ୍ତା ପାଣିରୁ ନିର୍ଗତ ବାଷ୍ପ ଏକ ଶକ୍ତିର ଉତ୍ସ ହୋଇପାରେ । ୧୭୯୦ ମସିହାରେ ବାଷ୍ପଚାଳିତ ଇଞ୍ଜିନ୍‌ର କ୍ରମ ବିକାଶ ପାଇଁ ଏହା ତାଙ୍କୁ ଉତ୍ସାହିତ କଲା । ଜେମ୍‌ସ ୱାଟ୍‌ଙ୍କର ଅବଦାନ ଗମନା ଗମନ କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଲା ଏବଂ ତାଙ୍କର ଏହି ଅବଦାନ ମନୁଷ୍ୟର ଅଗ୍ରଗତି ପାଇଁ ଏକ ବିରାଟ ପଦକ୍ଷେପ ।

ମୁଁ ଖୁବ୍ ସଂକ୍ଷେପରେ ତୁମକୁ କହୁଛି ଶୁଣ । ସ୍ୱାମୀଜୀଙ୍କ ଭାବଗୁଡ଼ିକ କେବଳ ଧାର୍ମିକ ବିଶ୍ୱାସ ଉପରେ ଆଧାରିତ ନୁହେଁ । ପ୍ରକୃତରେ ସ୍ୱାମୀଜୀ ସ୍ପଷ୍ଟ ଭାବରେ କହିଛନ୍ତି, ''କୌଣସି ମତକୁ ମାନିନେବା ଧର୍ମର ଅଂଶ ନୁହେଁ ।'' ତୁମେ କ'ଣ ଶୁଣି ନାହଁ 'ମତବାଦ' ବୋଲି ଏକ ଶବ୍ଦ ଅଛି ? ସତ୍ୟ ଏବଂ ମତବାଦ ମଧ୍ୟରେ ଆକାଶ ପାତାଳ ପାର୍ଥକ୍ୟ ।

କୌଣସି ପ୍ରଶ୍ନର ଉତ୍ତର ମତବାଦ ଦେଇ ପାରିବ ନାହିଁ କିନ୍ତୁ ସତ୍ୟ ଦେଇ ପାରିବ । ବିଜ୍ଞାନ ସତ୍ୟତା ଚାହେଁ । ସ୍ୱାମୀଜୀଙ୍କର ବେଦାନ୍ତ ମଧ୍ୟ ସତ୍ୟକୁ ଅନ୍ୱେଷଣ କରେ । ବିଜ୍ଞାନ ଏବଂ ବେଦାନ୍ତ ମଧ୍ୟରେ ବିଭାଜକ ରେଖା ନାହିଁ । ତୁମେ ଜାଣ ବୈଜ୍ଞାନିକ ଗବେଷଣା କ'ଣ ? ଦେଖ, ଆମେ ଆମ ଇନ୍ଦ୍ରିୟଗୁଡ଼ିକୁ ସକ୍ରିୟ ରଖୁ, ଚକ୍ଷୁ ବିସ୍ଫାରିତ କରି ପଦାର୍ଥ ଗୁଡ଼ିକୁ ଦେଖୁ, ସଜାଗ କର୍ଣ୍ଣରେ ଶବ୍ଦ ଶୁଣୁ ଏବଂ ଚର୍ମ ଦ୍ୱାରା ପଦାର୍ଥକୁ ସ୍ପର୍ଶ କରୁ । ଅନ୍ୟ ଅର୍ଥରେ କହିବାକୁ ଗଲେ ଆମେ ଇନ୍ଦ୍ରିୟ ମାଧ୍ୟମରେ ତଥ୍ୟକୁ ସଂଗ୍ରହ କରୁ । ତା'ପରେ ଆମେ ଆମର କଳ୍ପନା ଶକ୍ତିକୁ ପ୍ରୟୋଗ କରୁ । ଆମେ ପଚାରୁ 'ଏହା ଏପରି କାହିଁକି,' ଏବଂ 'ଏହା ସେପରି କାହିଁକି ନୁହେଁ,' ଏବଂ 'ଏହା କାହିଁକି ଅନ୍ୟ କିଛି ହୋଇପାରିବ ନାହିଁ', ଇତ୍ୟାଦି । ଏହିପରି ଆମେ ଧୀରେ ଧୀରେ ବିଷୟ ବସ୍ତୁର ଗଭୀରତାକୁ ପ୍ରବେଶ କରୁ । ଏହା ହିଁ ବିଜ୍ଞାନ । ବର୍ତ୍ତମାନ, ସ୍ୱାମୀଜୀ ଠିକ୍ ବିଜ୍ଞାନ ପରି କୌଶଳ କିପରି ନିଜ ବ୍ୟକ୍ତିତ୍ୱ ଉପରେ ପ୍ରୟୋଗ କରାଯାଇପାରିବ, ତାହା କହିଛନ୍ତି । ଆମେ ବିଶ୍ୱ ବିଷୟରେ ବହୁ ପ୍ରଶ୍ନ ପଚାରିଛୁ ଏବଂ ଅନେକ ଉତ୍ତର ପାଇଛୁ । ନିଜ ବିଷୟରେ ପ୍ରଶ୍ନ ପଚାରିବା କ'ଣ ଆମର ଉଚିତ ନୁହେଁ ? ମୁଁ କିଏ ? ମୋ ମନରେ ଯେଉଁ ଚିନ୍ତା ଉଦୟ ହେଉଛି ସେଗୁଡ଼ିକ କ'ଣ ? ଏହି ଚିନ୍ତାଧାରାକୁ କିଏ ନିୟନ୍ତ୍ରଣ କରୁଛି ? ଏବଂ ଏହିପରି ଅନେକ କଥା । ପଚାର, ନିରୀକ୍ଷଣ କର ଏବଂ ଚିନ୍ତା କର, ମହାନ୍ ଉତ୍ତର ତୁମ ପାଖକୁ ଆସିଯିବ....

**ସରିତା** – ଏହି କଥାଗୁଡ଼ିକ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଆଚ୍ଛା, ମାମୁଁ, ସ୍ୱାମୀଜୀ ଯେଉଁ ବୈଜ୍ଞାନିକ ଧର୍ମ ଆବିଷ୍କାର କରିଥିଲେ, ତାହା କ'ଣ ବିଜ୍ଞାନ ସମ୍ମତ ?

**ସିଦ୍ଧାର୍ଥ** – ତୁମେ ନିଶ୍ଚିତ ଉପନିଷଦ ବିଷୟରେ ଶୁଣିଥିବ । ଏହା ଏକ ପୁରାତନ ଗ୍ରନ୍ଥ । ଐତିହାସିକମାନେ ଉପନିଷଦର ସମୟ ନିର୍ଦ୍ଧାରଣ କରିବା ପାଇଁ ବହୁ ପରିଶ୍ରମ କରୁଛନ୍ତି । ଏହି ଗ୍ରନ୍ଥଗୁଡ଼ିକ ଏହିପରି ଯୁକ୍ତିସମ୍ମତ ଚିନ୍ତାଧାରା ବହନ କରିଥାଏ ଯାହା ମନକୁ ଚିନ୍ତା ମଗ୍ନ କରିଦିଏ ! ଆଗ କାଳରେ ଆମର ପୂର୍ବ ପୁରୁଷମାନଙ୍କର ସ୍ୱାଧୀନ ଚିନ୍ତାଧାରା ଥିଲା । ସେମାନଙ୍କର ଆଲୋଚନାଗୁଡ଼ିକ ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ । ସେମାନେ ଯେଉଁ ଭାବରେ ସେଗୁଡ଼ିକୁ ପ୍ରକାଶ କରୁ–ଥିଲେ, ସେ ସବୁ କଥା ଚିନ୍ତା କଲା ବେଳକୁ... ଓଃ, ଦେଖ, ମୋ

**ତିନୋଟି ଜରୁରୀ ସମୀକରଣ**

ମନଯୋଗ ବିହୀନ ମୁଖସ୍ଥ = ବୁଦ୍ଧିହୀନ ପାଣ୍ଡିତ୍ୟ

ପ୍ରଶ୍ନନାହିଁ = ବୁଝିବା ଶକ୍ତି ନାହିଁ

ଉପରଠାଉରିଆ ପ୍ରଶ୍ନ = ଉପରଠାଉରିଆ ହୃଦୟଙ୍ଗମ ।

ଲୋମ କିପରି ଟାଙ୍କୁରି ଉଠୁଛି !

**(ସିଦ୍ଧାର୍ଥ ନିନାଦ କଣ୍ଠରେ କଠୋପନିଷଦର ମନ୍ତ୍ରଗୁଡ଼ିକୁ ଉଚ୍ଚାରଣ କରିବାକୁ ଲାଗିଲେ)**

**ସୁଧା** – (ସିଦ୍ଧାର୍ଥଙ୍କୁ) ରାତ୍ରି ଭୋଜନ ପ୍ରସ୍ତୁତି ସରିଲାଣି । ଶୀଘ୍ର ଧୋଇ ହୋଇ ଆସ । ରଘୁ, ମାମୁଁଙ୍କୁ ଉପର ମହଲାକୁ ତୋ ଗାଧୁଆ ଘରକୁ ନେଇଯା ।

**(ଖାଇବା ଟେବୁଲ ପାଖରେ)**

**ହିମେଶ** – ମୁଁ ଦେଖୁଛି ପିଲାମାନେ ବହୁତ ଆଶାବାଦୀ । ସିଦ୍ଧାର୍ଥ, ତୁମକୁ ପିଲାଙ୍କ ସହିତ ମିଶିବାର ବାଟ ଜଣା ।

**ସିଦ୍ଧାର୍ଥ** – ଆଚ୍ଛା, କହିଲ ଦେଖି ଏହିପରି ବୁଦ୍ଧିଆ ପିଲାଙ୍କୁ କିଏ ଭଲ ନ ପାଇବ !

**ରାଧିକା** – କିନ୍ତୁ ମାମୁଁ, ଆପଣ ସ୍ୱାମୀଜୀଙ୍କର ବେଦାନ୍ତ ଏବଂ ବୈଜ୍ଞାନିକ ମନୋଭାବ ବିଷୟରେ ଯାହା କହିଲେ ମୁଁ କିଛି ବୁଝି ପାରିଲି ନାହିଁ । ବେଦାନ୍ତ ଓ ବିଜ୍ଞାନ ମଧ୍ୟରେ ସମତା କ'ଣ ଏବଂ ପ୍ରଭେଦ କ'ଣ ?

**ସୁଧା** – ତୁ କ'ଣ ମାମୁଁଙ୍କୁ ଶାନ୍ତିରେ ଖାଇବାକୁ ଦେବୁ ନାହିଁ ? ଏହିସବୁ ଆଲୋଚନା ପରେ କଲେ ଚଳିବ ନାହିଁ ?

**ସିଦ୍ଧାର୍ଥ** – ଦେଖ, ରାଧିକା । ବିଜ୍ଞାନ ସାରା ଜଗତକୁ ବିଶ୍ଳେଷଣ କରେ । କିନ୍ତୁ ବେଦାନ୍ତ ବ୍ୟକ୍ତିକୁ ବିଶ୍ଳେଷଣ କରେ । ଉଭୟ ଯୁକ୍ତିଯୁକ୍ତ ଏବଂ ଉଭୟ ବୈଜ୍ଞାନିକ ପଦ୍ଧତିକୁ ଗ୍ରହଣ କରି ଥାଆନ୍ତି । ପଚାର, ଅନୁଧ୍ୟାନ କର, ଚିନ୍ତା କର, ସଠିକ୍ ଉତ୍ତର ତୁମ ପାଖକୁ ଆସିଯିବ । ତୁମେ ଜାଣ, ଯୁକ୍ତିଯୁକ୍ତତାର ମାନେ କ'ଣ ?

**ସରିତା** – ଠିକ୍ ବୋଲି ପ୍ରମାଣ ହୋଇ ସାରିବା ପରେ ଯାହାକୁ ଗ୍ରହଣ କରାଯାଏ ! ଅନ୍ୟ ପକ୍ଷରେ କହିବାକୁ ଗଲେ, ଅନ୍ଧଭାବରେ ଗ୍ରହଣ ନ କରିବା, ଏହାହିଁ ଯୁକ୍ତି ଯୁକ୍ତତା ବା ବିଜ୍ଞତା ।

**ସିଦ୍ଧାର୍ଥ** – ବର୍ତ୍ତମାନ, ମୁଁ ଯାହା କହୁଛି ଶୁଣ । ମନେକର ତୁମେ ଗୋଟିଏ ପଥର ଉପରକୁ ଫିଙ୍ଗିଲ । ଏହାପରେ କ'ଣ ହେବ ? ତଳକୁ ଖସି ପଡ଼ିବ, ନୁହେଁ କି ? ଏହା ଉପରକୁ ଉପରକୁ ଯିବ ନାହିଁ କିମ୍ୱା ମହାଶୂନ୍ୟରେ ଲୀନ ହୋଇଯାଏ ନାହିଁ ।

**ପିଲାମାନେ**– ନା, ସେମିତି କିଛି ହୁଏ ନାହିଁ । ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ବସ୍ତୁକୁ ଉପରୁ ତଳକୁ ଟାଣି ଆଣେ ।

### ନିଜେ କର ଏବଂ ନିଶ୍ଚିତ ହୁଅ

**ପ୍ରାଧ୍ୟାପକ**–ଏହି କୋଠରିର ଲମ୍ୱ କେତେ ?

**ଜଣେ ପିଲା** – ପ୍ରାୟ ଦଶଫୁଟ ।

**ପ୍ରାଧ୍ୟାପକ** –ଭୁଲ ।

**ଅନ୍ୟଜଣେ ଛାତ୍ର** –ଦଶରୁ ବାରଫୁଟ ମଧ୍ୟରେ ହୋଇପାରେ ।

**ପ୍ରାଧ୍ୟାପକ**–ଭୁଲ ।

**ସମସ୍ତ ଛାତ୍ର**–ତାହାହେଲେ ଠିକ ଉତ୍ତର କ'ଣ ?

**ପ୍ରାଧ୍ୟାପକ**–ଠିକ ଉତ୍ତର ହେଉଛି, 'ମୁଁ ଜାଣେ ନାହିଁ ।' କାର୍ଯ୍ୟଟି କରିବା ଶିଖ । ଜ୍ଞାନ କର୍ମରୁ ଆସେ । ଅନୁମାନ ସର୍ବଦା ଅନିଶ୍ଚିତ ।

ସିଦ୍ଧାର୍ଥ - ଟିକିଏ ରୁହ । ଆମେ ଗୋଟିକ ପରେ ଗୋଟିଏ ଆଲୋଚନା କରିବା । ତୁମେ ଯାହା ଉପରକୁ ଫିଙ୍ଗୁଛ ତାହା ତଳକୁ ଚାଲିଆସୁଛି । ନୁହେଁ କି ?

ସମସ୍ତପିଲା-- ହଁ ।

ସିଦ୍ଧାର୍ଥ - ବର୍ତ୍ତମାନ ମୁଁ ଗୋଟିଏ ପ୍ରଶ୍ନ ପଚାରୁଛି, ''ଆକାଶକୁ ଫିଙ୍ଗା ଯାଉଥିବା ସମସ୍ତ ଜିନିଷ ତଳକୁ କାହିଁକି ଖସିଆସେ ? ଯଦି ମୁଁ କହେ, ''ଗୋଟିଏ ଭୂତ ଆକାଶରେ ବସିଛି ଏବଂ ତା'ର କାମ ହେଲା ଯାହା ସବୁ ଉପରକୁ ଫିଙ୍ଗା ଯାଉଛି ସେ ସେଗୁଡ଼ିକୁ ଧରି ଆମ ପାଖକୁ ଜୋର୍‌ରେ ଫିଙ୍ଗି ଦେଉଛି !'' ତୁମେ କ'ଣ ମୋର ଏ ଉତ୍ତରକୁ ଗ୍ରହଣ କରିବ ?

ସରିତା - ନା, ମାମୁଁ, ଆମ ଶିକ୍ଷକ ଆମକୁ ପଢ଼ାଇଛନ୍ତି ଯେ ପୃଥିବୀର ମାଧ୍ୟାକର୍ଷଣ ବଳ ଯୋଗୁଁ ସବୁ ଜିନିଷ ତଳକୁ ଖସି ପଡ଼େ । ତେଣୁ ଆପଣଙ୍କ ଉତ୍ତରଟି ସମ୍ପୂର୍ଣ୍ଣ ଭାବେ ଭୁଲ୍ ।

ସିଦ୍ଧାର୍ଥ - ହଁ, ମୋ ଉତ୍ତରଟି ଭୁଲ୍ । କିନ୍ତୁ ଅପରିହାର୍ଯ୍ୟ ନୁହେଁ, କାରଣ ତୁମ ଶିକ୍ଷକ ତୁମକୁ ମାଧ୍ୟାକର୍ଷଣ ବିଷୟରେ...

ରାଧିକା - ମାମୁଁ, ମୁଁ ଅନୁଭବ କରୁଛି, ଆପଣଙ୍କ ଉତ୍ତରଟି ଭୁଲ୍, କିନ୍ତୁ କାହିଁକି ଭୁଲ୍ ମୁଁ ଏହା ବୁଝାଇବାକୁ ଅସମର୍ଥ ।

ସିଦ୍ଧାର୍ଥ - ବାଃ, ତୁମେ ବଡ଼ ଚମତ୍କାର କଥା କହିଲ । ହଁ, ଆମେ ଜାଣିବା ଉଚିତ ଯେ ଗୋଟିଏ ବ୍ୟାଖ୍ୟା ଠିକ୍ ଅଛି କି ଭୁଲ ଅଛି ତାହା ହେଉଛି ଯୁକ୍ତିଯୁକ୍ତତାର ମୂଳଦୁଆ । ଯୁକ୍ତିଯୁକ୍ତତାର ଦ୍ୱିତୀୟ ଲକ୍ଷଣ ହେଉଛି ଯୁକ୍ତିଯୁକ୍ତ ବ୍ୟାଖ୍ୟା ପରିସ୍ଥିତିକୁ ସରଳ କରିଦେବ । ଏହାକୁ ଟିକିଏ ମନଦେଇ ବୁଝିବାକୁ ଚେଷ୍ଟାକର । ମୁଁ ଯଦି କହେ, ଭୂତ ଯୋଗୁଁ ଜିନିଷଗୁଡ଼ିକ ତଳକୁ ପଡୁଛି, ତାହାହେଲେ ମୋତେ ପ୍ରଥମେ ବୁଝାଇବାକୁ ପଡ଼ିବ ଯେ ସେ ଭୂତ କିଏ, ସେ ଏତେ ଉପରକୁ ଗଲା କିପରି ? ଆମେ ଯେତେବେଳେ କୌଣସି ଜିନିଷ ଉପରକୁ ଫିଙ୍ଗି ନ ଥାଉ, ସେତେବେଳେ ସେ କ'ଣ କରେ ? ଭୂତଟି ଶୋଇ ପଡୁଥିବା ସମୟରେ କ'ଣ ହୁଏ, ଭୂତ ପ୍ରକୃତରେ ଶୁଏ କି ଶୁଏ ନାହିଁ, ଇତ୍ୟାଦି ଇତ୍ୟାଦି... ଏଥିରୁ ତୁମେ କ'ଣ ବୁଝିଲ ? ମୋ ପରିସ୍ଥିତି ଅଧିକରୁ ଅଧିକ ଜଟିଳ ହେଲା ।

ଯଦି ମୁଁ କହେ ପୃଥିବୀ ଏବଂ ଫିଙ୍ଗା ଯାଇଥିବା ପଦାର୍ଥ ମଧ୍ୟରେ ମିଳିତ ଆକର୍ଷଣ ବଳ ଯୋଗୁଁ ବସ୍ତୁଗୁଡ଼ିକ ତଳକୁ ଖସି ପଡୁଛି ଏବଂ ପୃଥିବୀ ଏବଂ ପୃଥିବୀର ଯେ କୌଣସି ଦୁଇଟି ବସ୍ତୁ ପରସ୍ପରକୁ ଆକର୍ଷଣ କରନ୍ତି ଏବଂ ପଦାର୍ଥର ସ୍ଥିତି ଥିଲା ପର୍ଯ୍ୟନ୍ତ ଶକ୍ତିର ସ୍ଥିତି ଅଛି, ଏବଂ ଏହି ଶକ୍ତି ପ୍ରତ୍ୟେକ ପଦାର୍ଥର ମୂଳ ପ୍ରକୃତି । ଦେଖ, ଆଉ ପୁନଃ ପ୍ରଶ୍ନ ଉଠିବ ନାହିଁ! ତୁମେ ଲକ୍ଷ୍ୟ କରିଛ କି ? ମୁଁ ଏଠାରେ ଏହି ପରିସ୍ଥିତିକୁ ସରଳ କରି ଦେଇଛି । ତେଣୁ, 'ଯୁକ୍ତିଯୁକ୍ତତା' ପରିସ୍ଥିତିକୁ ସରଳ କରେ ।

ବର୍ତ୍ତମାନ, ମୂଳ ଆଲୋଚନାକୁ ଆସ, ମୁଁ କହିଲି ଯେ ବିଜ୍ଞାନ ବିଶ୍ୱକୁ ଅଧ୍ୟୟନ କରେ ଏବଂ ବେଦାନ୍ତ ବ୍ୟକ୍ତିତ୍ୱକୁ ଅଧ୍ୟୟନ କରେ । ଆମେ ଜାଣିବା ଉଚିତ ଏ ବିଶ୍ୱ କ'ଣ ? ଆମର ମଧ୍ୟ ଏହା ଜାଣିବା ଉଚିତ ଯେ ଆମେମାନେ କ'ଣ ? ବିଜ୍ଞାନ ଓ ବେଦାନ୍ତ ଉଭୟ ସମାନଭାବରେ ଦରକାରୀ । ଉଭୟ ସତ୍ୟର ଅନୁସନ୍ଧାନ କରନ୍ତି ।

ପ୍ରତ୍ୟେକ ପାଠ୍ୟରେ ଥିବା ବିଷୟ ପ୍ରତି ସମ୍ମାନବୋଧ ରହିବା ଉଚିତ । ଆମର ଗୁରୁଜନମାନେ ଏପର୍ଯ୍ୟନ୍ତ ଯାହା ଆବିଷ୍କାର କରିଛନ୍ତି, ତୁମେ ପ୍ରଥମେ ସେଗୁଡ଼ିକୁ ଶ୍ରଦ୍ଧାର ସହିତ ବୁଝିବା ଦରକାର, ତା'ପରେ ତୁମେ ପୁନଶ୍ଚ ପ୍ରଶ୍ନ ପଚାରିବାକୁ ସାହସୀ ହେବ ଏବଂ ବିଷୟବସ୍ତୁର ଗଭୀରତାକୁ ପ୍ରବେଶ କରିବ । ନୂଆ ନୂଆ ଚିନ୍ତାଧାରା ଆବିଷ୍କାର କରିବ । ସେତେବେଳେ ଆମର ପୂର୍ବ ପୁରୁଷମାନେ ଆମ ପାଇଁ ଗର୍ବିତ ହେବେ । ଭୁଲ ନାହିଁ – ଆମ ଭାରତର ପୂର୍ବଜମାନେ କି ପ୍ରକାର ସାହସୀ ଏବଂ ସ୍ୱାଧୀନଚେତା ଥିଲେ ! ସେମାନଙ୍କର ରକ୍ତ ଆମ ଶିରା ପ୍ରଶିରାରେ ପ୍ରବାହିତ ।

ରଘୁ – (ରାଧିକା ଏବଂ ସରିତାକୁ) ବାଃ! ମାମୁଁଙ୍କ ଆସିବା ପୂର୍ବରୁ ତୁମ ଦୁଇଜଣଙ୍କ ମଧ୍ୟରେ ଯେଉଁ ଝଗଡ଼ା ହେଉଥିଲା ଏବେ ତାହାର ସମାଧାନ ହୋଇଗଲା ।

**(ତା'ପରେ ସିଦ୍ଧାର୍ଥକୁ ଚାହିଁ)**

ଆପଣ ଜାଣନ୍ତି ମାମୁଁ, ଏ ଦୁଇ ଜଣ ଖୁବ୍ ଜୋର୍‌ରେ ଯୁକ୍ତି ତର୍କ କରୁଥିଲେ । ଆଜ୍ଞାବହ ହେବା ଭଲ ନା ଅବାଧ୍ୟ ହେବା ଭଲ । ରାଧିକା ନାନି କହିଲେ, ମନୁଷ୍ୟର ସମସ୍ତ ଉନ୍ନତି ଏହି ଅବାଧ୍ୟ କାରଣରୁ ହିଁ ହୋଇଛି । କିନ୍ତୁ ସରିତା ନାନିଙ୍କର ମନୋଭାବ ଖୁବ୍ ରକ୍ଷଣଶୀଳ ଭଳି ଜଣା ପଡୁଥିଲା । କାହାର ମନୋଭାବ ଠିକ୍ ମୁଁ ସ୍ଥିର କରିପାରୁ ନ ଥିଲି । କିନ୍ତୁ ବର୍ତ୍ତମାନ ମୁଁ ଅନୁଭବ କରୁଛି ଯେ ଦୁଇ ଜଣଙ୍କର ଚିନ୍ତାଧାରାର ଆବଶ୍ୟକତା ଅଛି।

ସିଦ୍ଧାର୍ଥ – ସ୍ୱାମୀଜୀ ଏ ବିଷୟରେ କ'ଣ କହିଛନ୍ତି ତୁମେ ଜାଣ ? ସ୍ୱାମୀଜୀ କହିଛନ୍ତି, ''ଆମେ ଚାହୁଁ ପାଶ୍ଚାତ୍ୟ ବିଜ୍ଞାନ ଆମ ବେଦାନ୍ତ ସହ ଯୁକ୍ତ ହେଉ, ଆମର ଆଦର୍ଶ ବ୍ରହ୍ମଚର୍ଯ୍ୟ ଦ୍ୱାରା ଅନୁପ୍ରାଣିତ ହେଉ, ଏବଂ ନିଜ ଉପରେ ବିଶ୍ୱାସ ଏବଂ ଶ୍ରଦ୍ଧା ରହୁ ।'' ମୁଁ ଚାହେଁ ତୁମେମାନେ ଏହି କଥାର ମର୍ମ ଭଲ ଭାବରେ ବୁଝ । ରଘୁ, ମୁଁ ଯାହା କହିଲି, ତୁମେ ଆଉ ଥରେ କୁହ ।

ରଘୁ – ଆମେ ଚାହୁଁ.... ବିଜ୍ଞାନ, ବେଦାନ୍ତ, ବ୍ରହ୍ମଚର୍ଯ୍ୟ....ଶ୍ରଦ୍ଧା.....

ସିଦ୍ଧାର୍ଥ – ନା, ଠିକ୍ ଭାବରେ କହିପାରିଲ ନାହିଁ । ସ୍ୱାମୀଜୀଙ୍କର ଏହି ବାକ୍ୟକୁ ଠିକ୍ ଭାବରେ ମନେରଖ । ଏହି ବାକ୍ୟର ପ୍ରତ୍ୟେକଟି ଶବ୍ଦ ଖୁବ୍ ଶକ୍ତିସମ୍ପନ୍ନ । ଏହାର ପ୍ରଭାବ ତୁମ ଜୀବନର ଗତି ବଦଳାଇ ଦେବ ।

ରାଧିକା – 'ଶ୍ରଦ୍ଧା' ଏବଂ 'ନିଜ ଉପରେ ବିଶ୍ୱାସ'ର ଅର୍ଥ ଏକାପରି ନୁହେଁ କି ? ମୋର ମନେ ପଡୁଛି..

ସରିତା – ମାମୁଁ, ବ୍ରହ୍ମଚର୍ଯ୍ୟ କ'ଣ ?

ସୁଧା – ସିଦ୍ଧାର୍ଥ, କି ଚମତ୍କାର ! ମୁଁ ଆଇସକ୍ରିମ୍ ଭଳି ଏତେ ଭଲ ଖାଦ୍ୟ ଆଣି ଥିଲେ ସୁଦ୍ଧା, ପିଲାମାନେ ଏଥି ପ୍ରତି ଦୃଷ୍ଟି ନ ରଖି ତୁମ ସାଙ୍ଗରେ କଥା କହିବାରେ ମଗ୍ନ !

ସିଦ୍ଧାର୍ଥ – (ସବୁପିଲାଙ୍କୁ) ତୁମେ କ'ଣ ଚାହୁଁଛ ସବୁ ଜିନିଷ ଏକା ଦିନକରେ ଜାଣିବ ? ମୁଁ ଆଉ ଥରେ ଆସିଲେ ତୁମେମାନେ ଏହି ପ୍ରଶ୍ନ ପଚାରିବ, ମୁଁ ତୁମମାନଙ୍କୁ ବୁଝାଇବାକୁ ଚେଷ୍ଟା କରିବି । ବର୍ତ୍ତମାନ ଚାଲ ଆଇସକ୍ରିମ୍‌ର ମଜା ନେବା ।



## ମହାକାଶ ଯାତ୍ରା


(ୟୁରୀ ଗାଗାରିନ୍)

ମହାକାଶ ସମ୍ପର୍କରେ ଜାଣିବାକୁ ବହୁ ଜନ୍ମ ଲାଗିଯିବ । ଆଇମା କାହାଣୀ ପେଡ଼ିରୁ କାହାଣୀ ବାହାରିବା ପରି ପ୍ରତିଦିନ ମହାକାଶରେ ଘଟୁଥିବା ନୂତନ ଘଟଣାମାନ ଆମ ଦୃଷ୍ଟିକୁ ଆସିବ । ମହାକାଶ ସବୁବେଳେ ମଣିଷକୁ ଆହ୍ୱାନ କରିଛି ଏବଂ ସେହି ଆହ୍ୱାନକୁ ଗ୍ରହଣ କରି ମଣିଷ ଆଜି ବିଜ୍ଞାନର ବହୁ ତଥ୍ୟ ଲୋକଲୋଚନକୁ ଆଣିପାରିଛି । ଅନନ୍ତ ବିଶ୍ୱକୁ ଜାଣିବା ପାଇଁ ମଣିଷର ଏହା ହେଉଛି ଅସରନ୍ତି ଯାତ୍ରା ।

ବିଧିବଦ୍ଧ ଭାବେ ମହାକାଶ ଯୁଗ ୧୯୫୭ ମସିହା ଅକ୍ଟୋବର ୪ ତାରିଖରେ ଆରମ୍ଭ ହେଲା । ସେହିଦିନ ରୁଷିଆର ବୈଜ୍ଞାନିକମାନେ ସେମାନଙ୍କର ପ୍ରଥମ ମହାକାଶ ଯାନ 'ସ୍ପୁଟନିକ-୧'କୁ ମହାକାଶକୁ ଉତ୍‌କ୍ଷେପଣ କଲେ ଏବଂ ଏହାର ଏକ ମାସ ପରେ 'ସ୍ପୁଟନିକ-୨' ମହାକାଶ ଯାନରେ 'ଲାଇକା' ନାମକ କୁକୁରକୁ ବସାଇ ମହାକାଶ ଘୂରାଇ ଆଣିଲେ । 'ଲାଇକା' ହେଉଛି ପୃଥିବୀର ପ୍ରଥମ ଜୀବନ୍ତ ପ୍ରାଣୀ ଯେ କି ମହାକାଶ ଯାତ୍ରା କରି ଫେରି ଆସିଲା । ମଣିଷ ମଧ୍ୟ ନିର୍ବିଘ୍ନରେ ମହାକାଶରେ ଯାତ୍ରା କରିପାରିବ ବୋଲି 'ଲାଇକା' ପ୍ରତ୍ୟାବର୍ତ୍ତନ କରିବା ପରେ ଆଶାର ସଞ୍ଚାର ହେଲା ।


(ଭାଲେନ୍ତିନା ଟେରେସ୍କୋଭା)

୧୯୫୮ ମସିହା ଜାନୁଆରୀ ୩୧ ତାରିଖରେ ଆମେରିକା ତା'ର ମହାକାଶ ଯାନ 'ଏକ୍ସପ୍ଲୋରର୍-୧' ମହାକାଶକୁ ପଠାଇଲା । ୧୯୬୧ ମସିହା ଅପ୍ରେଲ ୧୨ ତାରିଖରେ ରୁଷିଆର ମହାକାଶ ଯାନ 'ଭୋଷ୍ଟକ-୧' ରେ ୟୁରୀ ଗାଗାରିନ୍ (୧୯୩୪-୧୯୬୮) ପ୍ରଥମ ମହାକାଶ ଯାତ୍ରା କରିଥିଲେ । ମହାକାଶ ଯାନରେ ଥାଇ ପୃଥିବୀ ଓ ଆକାଶକୁ ଦେଖିବାର ପ୍ରଥମ ସୁଯୋଗ ୟୁରୀ ଗାଗାରିନ୍ ପାଇଥିଲେ । ପୁନଶ୍ଚ ୧୯୬୩ ମସିହାରେ ରୁଷିଆର ଭାଲେନ୍ତିନା ଟେରେସ୍କୋଭା ପ୍ରଥମ ମହିଳା ଯେ'କି ମହାକାଶ ଯାତ୍ରା କରିବାର ସୌଭାଗ୍ୟ ଅର୍ଜନ କରିଥିଲେ । 'ଭୋଷ୍ଟକ-୬' ମହାକାଶ ଯାନରେ ସେ ମହାକାଶକୁ ଯାଇ ୪୮ ଥର ପୃଥିବୀକୁ ପ୍ରଦକ୍ଷିଣ କରିଥିଲେ । ସେ ୨ ଦିନ ୨୨ ଘଣ୍ଟା ୨୧ ମିନିଟ୍ କାଳ ମହାକାଶରେ କଟାଇଥିଲେ ।

୧୯୬୫ ମସିହାରେ 'ଜେମିନି' ଏବଂ ତାହାପରେ 'ଆପୋଲ' ମହାକାଶଯାନ ମହାକାଶକୁ ଯାତ୍ରା କରିଥିଲା । ୧୯୬୯ ମସିହା ଜୁଲାଇ ୧୬ରେ ୩ ଜଣ ମହାକାଶଚାରୀଙ୍କୁ ନେଇ 'ଆପୋଲ-୨' ମହାକାଶ ଯାନ ମହାକାଶ ଯାତ୍ରା ଆରମ୍ଭ କରିଥିଲା । ଏହି ଯାନ ଯାଇ ଚନ୍ଦ୍ରରେ ପହଞ୍ଚିଲା । ମହାକାଶଚାରୀମାନେ ଚନ୍ଦ୍ରପୃଷ୍ଠ ସ୍ପର୍ଶ କରିଥିଲେ ।


(ନିଲ୍ ଆର୍ମଷ୍ଟ୍ରଙ୍ଗ୍)

୧୯୬୯ ମସିହା ଜୁଲାଇ ୨୦ ତାରିଖ ରାତି ୧୦ଟା ୫୬ମିନିଟ୍‌ରେ ନିଲ୍ ଆର୍ମଷ୍ଟ୍ରଙ୍ଗ ଚନ୍ଦ୍ର ପୃଷ୍ଠରେ ପ୍ରଥମେ ପାଦ

ପକାଇଥିଲେ । ଚନ୍ଦ୍ରରେ ପାଦ ପକାଇବାରେ ସେ ପ୍ରଥମ ମାନବ । ଚନ୍ଦ୍ର ପୃଷ୍ଠରେ ପାଦ ପକାଇବା ପରେ ନିଲ୍ ଆର୍ମଷ୍ଟ୍ରଙ୍ଗ ଯେଉଁ ନୈସର୍ଗିକ ଆନନ୍ଦ ଲାଭ କରିଥିଲେ ତାହା ପୃଥିବୀବାସୀଙ୍କୁ ଜଣାଇବା ପାଇଁ ରେଡ଼ିଓ ତରଙ୍ଗରେ ସେ ବାର୍ତ୍ତା ପଠାଇଥିଲେ । ସେ କହିଥିଲେ, 'ଗୋଟିଏ ବ୍ୟକ୍ତିର ଏହି ଛୋଟିଆ ପଦକ୍ଷେପ ହେଉଛି ମାନବ ଜାତି ପାଇଁ ଏକ ବିରାଟ ଲମ୍ଫ ପ୍ରଦାନ ।' (One small step for a man giant leap for mankind)

## ଭାରତର ମହାକାଶଚାରୀ


(ରାକେଶ ଶର୍ମା)

ସ୍କ୍ୱାଡ୍ରନ୍ ଲିଡ଼ର ରାକେଶ ଶର୍ମା – ରାକେଶ ଶର୍ମା ୧୯୪୯ ମସିହା ଜାନୁଆରୀ ୧୩ ତାରିଖରେ ପଞ୍ଜାବର ପଟିଆଲାଠାରେ ଜନ୍ମ ଗ୍ରହଣ କରିଥିଲେ । ସେ ୧୯୭୦ ମସିହାରେ ଭାରତୀୟ ବାୟୁସେନାରେ ପାଇଲଟ ଅଫିସର ଭାବରେ ଯୋଗଦେଲେ । ୧୯୮୪ ମସିହାରେ ୨ ଜଣ ରୁଷୀୟ ମହାକାଶଚାରୀଙ୍କ ସହିତ ସେ ମହାକାଶକୁ ଯାତ୍ରା କରିଥିଲେ । ଭାରତର ଜାତୀୟ ପତାକା ସେ ମହାକାଶରେ ଉଡ଼ାଇଥିଲେ । ସେ ମହାକାଶରେ ୮ ଦିନ ବିତାଇଥିଲେ । ସେତେବେଳେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଭାରତର ପ୍ରଧାନମନ୍ତ୍ରୀ ଥିଲେ । ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କୁ ପଚାରିଥିଲେ, 'ଭାରତ ମହାକାଶରୁ କେମିତି ଦେଖା ଯାଉଛି ।' ରାକେଶ ଶର୍ମା କହିଥିଲେ, 'ସାରେ ଜାହାଁସେ ଆଚ୍ଛା ହିନ୍ଦୁସ୍ଥାନ୍ ହମାରା' । 'ଅଶୋକ ଚକ୍ର' ଏବଂ 'ହିରୋ ଅଫ ସୋଭିଏତ୍ ୟୁନିୟନ' ଉପାଧି ତାଙ୍କୁ ଦିଆଯାଇଛି ।


(କଳ୍ପନା ଚାୱଲା)

କଳ୍ପନା ଚାୱଲା – ୧୯୬୧ ମସିହା ଜୁଲାଇ ୧ ତାରିଖରେ ହରିଆନାର କର୍ଣ୍ଣାଲ୍‌ଠାରେ ଜନ୍ମ ଗ୍ରହଣ କରିଥିଲେ । ସେ ପ୍ରଥମ ଭାରତୀୟ ବଂଶଜ ଓ ଆମେରିକାନ୍ ନାଗରିକ ଯେ କି ମହାକାଶକୁ ୧୯୯୭ ମସିହାରେ ଯାତ୍ରା କରିଥିଲେ । ସେ ମଧ୍ୟ ଭାରତର ପ୍ରଥମ ମହିଳା ମହାକାଶଚାରୀ ଏବଂ ରାକେଶ ଶର୍ମାଙ୍କ ପରେ ଦ୍ୱିତୀୟ । ସେ ପୁନଶ୍ଚ ୨୦୦୩ ମସିହା ଜାନୁଆରୀ ୧୬ ତାରିଖରେ ଏସ୍.ଟି.ଏସ୍. ୧୦୭ ମିଶନ ମହାକାଶ ଯାନରେ ମହାକାଶକୁ ଯାତ୍ରା କରିଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ପୃଥିବୀକୁ ଅବତରଣ କରୁଥିବା ସମୟରେ ପୃଥିବୀର ବାୟୁ ମଣ୍ଡଳରେ ୨୦୦୩ ଫେବୃଆରୀ ୧ ତାରିଖରେ ଯାନଟି ଦୁର୍ଘଟଣା ଗ୍ରସ୍ତ ହୋଇ ଜଳି ଯାଇଥିଲା । ସେଥିରେ ସେ ପ୍ରାଣ ହରାଇଥିଲେ ।


(ସୁନିତା ୱିଲିୟମସ୍)

ସୁନିତା ୱିଲିୟମସ୍ – ୧୯୬୫ ମସିହା ସେପ୍ଟେମ୍ବର ୧୯ ତାରିଖରେ ଆମେରିକାରେ ଜନ୍ମଲାଭ କରିଥିଲେ । ତାଙ୍କର ପିତା ଜଣେ ଭାରତୀୟ ଓ ମାତା ବିଦେଶିନୀ । ତାଙ୍କର ପିତା ଦୀପକ ପାଣ୍ଡିଆ ଗୁଜୁରାଟ ରାଜ୍ୟର । ସେ ଜଣେ ନ୍ୟୁରୋ ଆନାଟୋମିଷ୍ଟ । ସୁନିତା ୱିଲିୟମସ୍ I.S.S (International Space Station) ରେ ୨୦୦୬ ମସିହା ଡିସେମ୍ବର ୯ ତାରିଖରେ ପହଞ୍ଚିଥିଲେ । ସେ ମହାକାଶକୁ ନେଇଥିବା ବ୍ୟକ୍ତିଗତ ଜିନିଷ ମଧ୍ୟରେ ଶ୍ରୀମଦ୍‌ଭଗବଦ୍‌ଗୀତା ଓ ହିନ୍ଦୁ ଦେବତା ଶ୍ରୀଗଣେଷ ମୁଖ୍ୟ ଥିଲେ ।

ଅଧ୍ୟାୟ–୨

# ତୁମ ପାଇଁ ଛୋଟ ଉପହାରଟିଏ

ଏକ ରବିବାରର ଉଜ୍ଜ୍ୱଳ ସକାଳ । କ୍ରିଷ୍ଣା ତା'ଘରୁ ଝରକା ଦେଇ ବାହାରକୁ ଚାହିଁଥିଲା । ତା' ମା ବଗିଚାର ଫୁଲଗଛଗୁଡିକରେ ପାଣି ଦେଉଥିଲେ । ଅଷ୍ଟମ ଶ୍ରେଣୀରେ ପଢ଼ିବା ପରଠାରୁ ପ୍ରତି ରବିବାର ଦିନ ତା' ପଢ଼ାଘରଟିକୁ ସଫା କରିବା ତା'ର ଧରାବନ୍ଧା କାମଥିଲା । ତେଣୁ ସେ ତା'କାମଟି ଆରମ୍ଭ କରିଦେଲା ।

ପ୍ରଥମେ ସେ ତା' ବହିଗୁଡ଼ିକୁ ସଜାଡି ରଖିଲା । ଘରପଢ଼ା ପାଇଁ ବହିଗୁଡ଼ିକ ଟେବୁଲ ଉପରେ, ପାଠ୍ୟପୁସ୍ତକଗୁଡ଼ିକ ଥାକରେ, ମଜାଳିଆ ବହି ଓ ଗପ ବହିଗୁଡ଼ିକୁ ତା' ବିଛଣା ପାଖ ଥାକରେ ସଜାଡି ରଖିଲା । ତା'ପରେ ଜାମାପଟାଗୁଡ଼ିକୁ ଆଣି, ମଇଳା ଜାମାସବୁ ଅଲଗା କଲା ଏବଂ ସଫାଗୁଡ଼ିକୁ ଭାଙ୍ଗି ଆଲମାରିରେ ସଜାଇ ରଖିଲା । ମଇଳା ଜାମାକୁ ଗାଧୁଆ ଘରେ ସାବୁନ୍ ପାଣିରେ ଭିଜାଇ ରଖିସାରିବା ପରେ ବିଛଣାକୁ ଝାଡ଼ି ପରିଷ୍କାର କରିବାରେ ଲାଗିଲା । ଏହାପରେ ଘର ଓଳେଇବା କାମ । ଘର ଅଧା ଝାଡୁ କରିଛି, ହଠାତ୍ ତା'ର ମନେ ପଡ଼ିଗଲା ଯେ ସେ ଝରକାଗୁଡ଼ିକୁ ସଫା କରିବା ପାଇଁ ଭୁଲିଯାଇଛି । ଝାଡୁ ପକାଇଦେଇ ଖଣ୍ଡେ କପଡ଼ାରେ ଝରକାର କାଚଗୁଡ଼ିକୁ ସଫା କରିଦେଲା ଏବଂ ଝରକା ଗ୍ରିଲ୍‌ଗୁଡ଼ିକ ପୋଛି ପରିଷ୍କାର କଲା । କାମ କରିବା ସାଙ୍ଗେ ସାଙ୍ଗେ ସେ କ୍ୟାସେଟ୍ ପ୍ଲେୟାର୍ ଲଗାଇ ଗୀତ ଶୁଣୁଥିଲା । ଝରକା ସଫା କରିସାରି କ୍ୟାସେଟ୍‌ଟିକୁ ବଦଳାଇ ଦେଲା ଓ ବାକିଥିବା ଚଟାଣତକ ଓଳାଇବାକୁ ଲାଗିଲା ।



ଆଣ୍ଠେଇ ଝାଡୁଦେବା ସମୟରେ କ୍ରିଷ୍ଣା ଦେଖିବାକୁ ପାଇଲା ଖଟତଳେ ଗୋଟିଏ କାଗଜ ପେଟିରେ କିଛି ବହି ଅଛି । ସେ ଖୁସି ହୋଇ ପେଟିଟିକୁ ଦେଖିଲା, ସେଇଟା ହେଉଛି ତା'ଭାଇଙ୍କର । ତା'ଭାଇ ଜଣେ ବୁଦ୍ଧିମାନ୍ ଛାତ୍ର ଥିଲେ । ବର୍ତ୍ତମାନ ସେ ଉଚ୍ଚଶିକ୍ଷା ପାଇଁ ବାଙ୍ଗାଲୋର ଯାଇଛନ୍ତି । "ଏହି ବାକ୍ସଟିକୁ ମୁଁ ଆଜି ସଫା କରିବି । ମୁଁ ନିଶ୍ଚିନ୍ତ ଯେ ଏଥିରେ ଅନେକ ଅସରପା ଅଛନ୍ତି !" ଏହା ଭାବି କ୍ରିଷ୍ଣା କାଗଜ ପେଟିକୁ ଖୋଲିଲା । ବହିଗୁଡ଼ିକୁ ଧରି ବାଡ଼େଇ ଧୂଳି ଝାଡ଼ିଲା । ଏହି ସମୟରେ ଗୋଟିଏ ଟିପା ଖାତାରୁ କେତେ ଖଣ୍ଡ କାଗଜ ତଳେ ଝଡ଼ି ପଡ଼ିଲା । ସେଗୁଡ଼ିକୁ ଗୋଟାଇ ଅନ୍ୟମନସ୍କ ହୋଇ ଖୋଲି ଦେଖିଲା । ସେଥିରେ ନାଲି ଅକ୍ଷରରେ ଲେଖା ହୋଇଥିବା ପ୍ରଥମ ବାକ୍ୟଟି ତା'ର ଧ୍ୟାନ ଆକର୍ଷଣ କଲା । ତା' ବାପାଙ୍କର ସାନ ଭାଇ ଦିନେଶ ଦାଦାଙ୍କ ଉଦ୍ଦେଶ୍ୟରେ ଶ୍ରୀ ଟି.କେ. ମିଶ୍ର ଏହି ଚିଠିଟି ଲେଖିଥିଲେ । ଶ୍ରୀ ମିଶ୍ର ହେଉଛନ୍ତି ଦିନେଶ ଦାଦାଙ୍କ ଗଣିତ ଶିକ୍ଷକ ଏବଂ ତାଙ୍କ ପରିବାରର ଜଣେ ବନ୍ଧୁ । କ୍ରିଷ୍ଣା ଚିଠିଟି ପଢ଼ିଲା :

ପ୍ରିୟ ଦୀନେଶ,

''ଯେ କୌଣସି କାର୍ଯ୍ୟରେ ସଫଳତା ହେଉଛି, ଏକାଗ୍ରତାର ଫଳ ... ବାହ୍ୟ ବା ଅନ୍ତର୍ଜଗତରୁ ଯେଉଁ ସମସ୍ତ ଜ୍ଞାନ ଆମେ ପାଇଛୁ ତାହା କେବଳ ଗୋଟିଏ ପଦ୍ଧତି ମାଧ୍ୟମରେ, ତାହା ହେଉଛି ମନର ଏକାଗ୍ରତା.... ଟଙ୍କା ରୋଜଗାର କରିବା ହେଉ ବା ଠାକୁରଙ୍କୁ ଉପାସନା କରିବା ହେଉ, ଏକାଗ୍ରତା ଯେତେ ଦୃଢ଼ ହେବ, ସେହି କାର୍ଯ୍ୟଗୁଡ଼ିକ ସେତେ ଭଲ ହେବ । ମୋ ମତରେ ଏକାଗ୍ରତା ହିଁ ଶିକ୍ଷାର ଭିତ୍ତିଭୂମି, ତଥ୍ୟ ସଂଗ୍ରହ ନୁହେଁ ।

ତୁମର ଆଦର୍ଶ ସ୍ୱାମୀ ବିବେକାନନ୍ଦଙ୍କର ବାଣୀଗୁଡ଼ିକ ସମ୍ଭବତଃ ଏକାଗ୍ରତା ସମ୍ବନ୍ଧରେ ଥିବା ତୁମର ସନ୍ଦେହକୁ ଦୂର କରି ପାରିବ । ଆଜି ତୁମେ ଜଣେ ଛାତ୍ର । ଭଲ ଛାତ୍ରଟିଏ ହେବା ପାଇଁ ତୁମର ଯାହା ଦରକାର ତାହା ହେଉଛି ତୁମ ମନର ଏକାଗ୍ରତା । ଭବିଷ୍ୟତରେ ତୁମେ କୌଣସି ସ୍ଥାନରେ କାର୍ଯ୍ୟରତ ରହି, କ୍ଷମତାର ସଠିକ୍ ଉପଯୋଗ କରି ଜଣେ ଦାୟିତ୍ୱବାନ ନାଗରିକ ହେବ । ଜଣେ ଭଲ ନାଗରିକ ହେବା ପାଇଁ ତୁମର ଯାହା ଦରକାର ତାହା ହେଉଛି ମନର ଏକାଗ୍ରତା । ତୁମେ ବିବାହ କରିବ ଏବଂ ପିଲାମାନଙ୍କର ବାପା ହେବ । ତୁମେ ଜଣେ ଭଲ ବାପା ହେବା ପାଇଁ ଯାହା ଦରକାର ତାହା ହେଉଛି ମନର ଏକାଗ୍ରତା । ତେଣୁ ମନର ଏକାଗ୍ରତା ସର୍ବାପେକ୍ଷା ବେଶି ଗୁରୁତ୍ୱପୂର୍ଣ୍ଣ ।

ପ୍ରଶ୍ନ ହେଉଛି, 'ଏହା କିପରି ସମ୍ଭବ ହେବ ?' କିଛି ବର୍ଷ ତଳେ ରାଜୀବର କ'ଣ ହୋଇଥିଲା, ତୁମେ ଜାଣ ? ମୁଁ ସେହି ରାଜୀବ କଥା କହୁଛି, ଯିଏ ବର୍ତ୍ତମାନ ବାଙ୍ଗାଲୋରରେ ଅଛି । (ତାକୁ ଦେଖିଲେ ମୋର ଆନ୍ତରିକ ଶ୍ରଦ୍ଧା ଓ ଶୁଭେଚ୍ଛା ଜଣାଇଦେବ ) ସେ ଗୋଟିଏ ଅଶାନ୍ତ ବାଳକ ଥିଲା ଏବଂ ଶିକ୍ଷକମାନେ ତାକୁ ନିୟନ୍ତ୍ରଣ କରିବା ପାଇଁ ବହୁ ଅସୁବିଧାର ସମ୍ମୁଖୀନ ହେଉଥିଲେ । ତାକୁ ଶୃଙ୍ଖଳିତ କରିବା ପାଇଁ କିଛି ଉପାୟ ଥିଲା ପରି ଜଣା ପଡୁ ନ ଥିଲା । ସେ ଯେତେବେଳେ ଅଷ୍ଟମ ଶ୍ରେଣୀକୁ ଆସିଲା, ତାକୁ ମୋ ଶ୍ରେଣୀରେ ପଢ଼ିବାକୁ ପଡ଼ିଲା । ଧୀରେ ଧୀରେ ମୁଁ ତା'ସହିତ ମିଶିଲି ଏବଂ କଥାବାର୍ତ୍ତା କଲି । ମୁଁ ତାକୁ କେବେହେଲେ ଥରଟିଏ ପାଇଁ ମଧ୍ୟ କହି ନାହିଁ, ତୁମେ ଶୃଙ୍ଖଳିତ ହୁଅ, ନୀରବରେ ବସ, ଶାନ୍ତ ହୁଅ କିମ୍ବା ଆତ୍ମସଂଯମୀ ହୁଅ । ଏହା ଛଡ଼ା ଆମେ ଯେବେ ଏକାଠି ହେଉ, ମୁଁ ସବୁ ସମୟରେ ତାକୁ ଆମ ଦେଶକୁ ଯେଉଁମାନେ ଗଠନ କରିଛନ୍ତି ସେହିମାନଙ୍କ ମହାନ୍ ଜୀବନର କଥା କହେ, ଏବଂ ମୁଁ ତାକୁ ଉତ୍ସାହିତ କରି

### 'ପ୍ରଶ୍ନକରିବା' ଏକ ଶକ୍ତିଶାଳୀ ଅସ୍ତ୍ର

ଯିଏ ଶକ୍ତିଶାଳୀ ପ୍ରଶ୍ନ କରିପାରେ ତା' ମନରେ ଶକ୍ତିଶାଳୀ ବିଚାର ଆସେ । ଠିକ୍ ପ୍ରଶ୍ନଗୁଡ଼ିକ ଆମ ବିଚାରଧାରାର ଶକ୍ତି । ଯେକୌଣସି ମୁହୂର୍ତ୍ତର ଏକ ଭାବନା ସହସ୍ର ଦିଗକୁ ଯାଇଥାଏ । ପ୍ରଶ୍ନ ଆମ ବିଚାରର କାର୍ଯ୍ୟଧାରା ସ୍ଥିର କରିଥାଏ । ଆମେ ଖୋଜୁଥିବା ତଥ୍ୟକୁ ସେମାନେ ସ୍ଥିର କରନ୍ତି । ସେମାନେ ଆମକୁ ବିଭିନ୍ନ ଦିଗକୁ ନ ନେଇ ଗୋଟିଏ ଦିଗକୁ ନେଇ ଯାଆନ୍ତି । ପ୍ରଶ୍ନ ପଚାରିବାର କଳା ଶିକ୍ଷା କରିବା ହେଉଛି ଶକ୍ତିଶାଳୀ ଭାବନାର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ।

ପ୍ରତ୍ୟେକ ପଦାର୍ଥ ଉପରୁ ତଳକୁ ପଡୁଛି । ଏହା ସମସ୍ତେ ଦେଖୁଥିଲେ । କିନ୍ତୁ କାହିଁକି ପଡୁଛି ବୋଲି କେହି ପ୍ରଶ୍ନ କରୁ ନ ଥିଲେ ବା କାହା ମନରେ ଏହି ଭାବନା ଆସୁ ନ ଥିଲା । ଏହି ପ୍ରଶ୍ନଟି ନିୟୁଟନ୍‌ଙ୍କ ବିଚାରକୁ ଶକ୍ତିଶାଳୀ କଲା ଏବଂ ସେ ମାଧ୍ୟାକର୍ଷଣ ଶକ୍ତି ଆବିଷ୍କାର କରିବାରେ ସଫଳ ହେଲେ ।

କହେ ଯେ, ଆମେମାନେ ମଧ୍ୟ ସେମାନଙ୍କ ଭଳି ହୋଇପାରିବା । ୮ମ ଶ୍ରେଣୀ ଠାରୁ ୧୦ମ ଶ୍ରେଣୀ ପର୍ଯ୍ୟନ୍ତ ମୁଁ ତାକୁ ସବୁ ବେଳେ ଏହି ଭଳି କହୁଥିଲି । ତା' ବୋର୍ଡ୍ ପରୀକ୍ଷା ପାଖେଇ ଆସିଲା ବେଳକୁ ତା' ମଧ୍ୟରେ ପରିବର୍ତ୍ତନ ଦେଖାଗଲା । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ତା'ର ଏପରି ପରିବର୍ତ୍ତନର କାରଣ କ'ଣ ? ପରୀକ୍ଷାରେ ନମ୍ବର କମିଯିବା ଭୟରେ ନାଁ ଆଉ କ'ଣ ? ମୁଁ ତା' ବାପା, ମା' ଓ ସାଙ୍ଗମାନଙ୍କ ସହିତ ଆଲୋଚନା କଲି । ତୁମେ ଜାଣ କେଉଁଥି ପାଇଁ ତା'ର ଏପରି ପରିବର୍ତ୍ତନ ହେଲା ? ମୋର ତିନିବର୍ଷର ପରିଶ୍ରମ ଫଳପ୍ରସୂ ହେବାକୁ ଯାଉଥିଲା । ସେ ତା' ଜୀବନରେ ଏକ ଲକ୍ଷ୍ୟ ନିର୍ଦ୍ଧାରଣ କରିଥିଲା ! ସେ ମୋତେ ପରିଷ୍କାର ଭାବରେ କହିଲା, 'ସାର୍, ଭାରତର ପ୍ରତ୍ୟେକ ଗାଁ ଲୋକଙ୍କ ପାଖରେ କମ୍ପ୍ୟୁଟର ପହଞ୍ଚାଇବା ପାଇଁ ମୁଁ ଚାହୁଁଛି !' ଏହା ହିଁ ରହସ୍ୟ ଥିଲା । ଯେହେତୁ ସେ ତା' ଲକ୍ଷ୍ୟ ସ୍ଥିର କରିଦେଇଥିଲା ସେଥି ପାଇଁ ତା' ମନରେ ଏକାଗ୍ରତା ଆସି ଯାଇଥିଲା ।

ତେଣୁ ତୁମେ ଜୀବନରେ ଏକ ଉଚ୍ଚ ଏବଂ ନିଃସ୍ୱାର୍ଥପର ଲକ୍ଷ୍ୟ ହାସଲ ପାଇଁ ସ୍ୱପ୍ନ ଦେଖ । ଏହା ଏତେ ଉଚ୍ଚ ହେଉ, ଯାହାକୁ ଯଦି ତୁମେ କାହା ଆଗରେ ପ୍ରକାଶ କର ସେମାନେ ଶୁଣି ହସିବେ । ଲକ୍ଷ୍ୟ ଯାହା ହେଉନା କାହିଁକି, ତାହା ନିଃସ୍ୱାର୍ଥପର ହେବା ଦରକାର । 'ମୁଁ ଚାହେଁ ଗୋଟିଏ ଭଲ ବାପା ହେବି ।' 'ମୁଁ ଚାହେଁ ମୋର ସହରର ଲୋକମାନଙ୍କୁ ଭଲ ଖବର କାଗଜ ଦେବି ।' 'ମୁଁ ଚାହେଁ କ୍ରିକେଟ୍ ଖେଳରେ ଭାରତର ପ୍ରତିନିଧିତ୍ୱ କରିବି ଏବଂ ପୃଥିବୀର ଶ୍ରେଷ୍ଠ ଉଇକେଟ୍ ରକ୍ଷକ ହେବି ।' 'ମୁଁ ଚାହେଁ ହୋଟେଲ ଶିଳ୍ପରେ ଏକ ଭଲ ରୋଷେୟା ହେବି ଏବଂ ଭଲ ଖାଦ୍ୟ ପ୍ରସ୍ତୁତ କରି ଲୋକମାନଙ୍କୁ ପରଷିବି ଇତ୍ୟାଦି ।' ଏହା ହେଉଛି ମନକୁ ଲୟ କରିବାର ଏକମାତ୍ର ଉପାୟ । ମନକୁ ଏକାଗ୍ର କରିବାର ପ୍ରଥମ ସୋପାନ ।

ସସ୍ମିତା ସେନାପତିଙ୍କୁ ମନେ ପକାଅ । ସେ ଏଠାରେ ବସ୍ତି ବାସିନ୍ଦାଙ୍କ ପାଇଁ ଏକ ଅଗ୍ରଣୀ ସାନ୍ଧ୍ୟ ବିଦ୍ୟାଳୟ ପରିଚାଳନା କରୁଛନ୍ତି । ବହୁ ବର୍ଷତଳର କଥା, ତୁମେ ଯେତେବେଳେ ଜନ୍ମ ହୋଇ ନ ଥିଲ, ସେ ମୋର ଛାତ୍ରୀ ଥିଲେ । ତୁମ ପରି ସେ ମଧ୍ୟ ଠିକ୍ ଏହି କଥା ପଚାରିଥିଲେ, 'ମନରେ ଏକାଗ୍ରତା କିପରି

### ଉପନିଷଦୀୟ ଜ୍ଞାନ

ଇନ୍ଦ୍ର ଏବଂ ବିରୋଚନ ନାମରେ ଦୁଇଜଣ ଛାତ୍ର ମହାନ୍ ଗୁରୁ ପ୍ରଜାପତିଙ୍କ ନିକଟକୁ ଗଲେ । ସେମାନେ ତାଙ୍କୁ ପଚାରିଲେ, ''ମହାଶୟ, ଆମ ମଧ୍ୟରେ ଅମରଣଶୀଳ ବସ୍ତୁ କିଛି ଅଛି କି ?'' ପ୍ରଜାପତି ଉତ୍ତର ଦେଲେ, ''ହଁ, ତୁମେମାନେ ଅମରଣଶୀଳ ।'' ବିରୋଚନ ଏଥିରୁ ବୁଝିଲେ ଯେ ସେ ଅର୍ଥାତ୍ ତାଙ୍କ ଶରୀର ଅମରଣଶୀଳ । ସେ ସେଠାରୁ ଚାଲିଗଲେ ଏବଂ ବିଳାସମୟ ଜୀବନ ଯାପନ କଲେ । ତାଙ୍କର ସମସ୍ତ ଶକ୍ତି ଏବଂ ସାମର୍ଥ୍ୟ କ୍ଷୟ ହୋଇଗଲା ଏବଂ ସେ ଏହିପରି ଏକ ଦୁଃଖମୟ ଜୀବନ ଅତିବାହିତ କରି ଦୁଃଖରେ ମୃତ୍ୟୁ ବରଣ କଲେ ।

ଇନ୍ଦ୍ର ବୁଝିଲେ ଯେ ତାଙ୍କର ଶରୀର ଅମରଣଶୀଳ ହୋଇ ନ ପାରେ । କାରଣ କିଏ ନ ଦେଖିଛି ଶରୀର କ୍ଷୟପ୍ରାପ୍ତ ହୋଇ ମରେ ବୋଲି । ତେଣୁ ସେ ଚିନ୍ତା କଲେ ଶରୀର ବ୍ୟତୀତ ଅନ୍ୟ କିଛି ଅଛି ଯାହା ଅମରଣଶୀଳ । ଏହି ବିଶ୍ୱାସ ତାଙ୍କୁ ଏକ ଅଦ୍ଭୁତ ଅନୁଭୂତି ଆଣିଦେଲା । ଧୀରେ ଧୀରେ ସେ ଆତ୍ମ ପରିଚୟ ଲାଭ କଲେ । ସେ ସଫଳ ଜୀବନ ଅତିବାହିତ କରି ପରମାନନ୍ଦରେ ମୃତ୍ୟୁବରଣ କଲେ ।

ସମ୍ଭବ ହେବ ?' ତୁମେ ଜାଣ, ବସ୍ତି ବାସିନ୍ଦାଙ୍କ ପାଇଁ କିଛି କରିବା ପାଇଁ ଏପରିକି ତାଙ୍କ ମନରେ ସେତେବେଳେ ମଧ୍ୟ ପ୍ରବଳ ଆକାଙ୍‌କ୍ଷା ଥିଲା । ତାହା ହିଁ ତାଙ୍କ ଜୀବନର ଲକ୍ଷ୍ୟ ଥିଲା । କିନ୍ତୁ ସେ ଏହି ପଥରେ ଆଗେଇପାରୁ ନ ଥିଲେ । ମୁଁ ଜାଣିପାରିଲି, ସେ ବର୍ତ୍ତମାନର କାର୍ଯ୍ୟକୁ ତାଙ୍କ ଜୀବନର ଲକ୍ଷ୍ୟ ସହିତ ସଂପର୍କ ସ୍ଥାପନ କରାଇ ପାରୁ ନ ଥିଲେ । ବର୍ତ୍ତମାନ ସେ ଉଚ୍ଚ ବିଦ୍ୟାଳୟ ସ୍ତରରେ କ'ଣ କରିବା ଉଚିତ, ଯାହା ତାଙ୍କ ଭବିଷ୍ୟତର ଲକ୍ଷ୍ୟକୁ ସାକାର କରିବ, ଏକଥା ସେ ବୁଝିପାରି ନ ଥିଲେ । ତେଣୁ ମୁଁ ତାଙ୍କୁ ପଚାରିଲି, ''ବସ୍ତିବାସିନ୍ଦାଙ୍କ ପାଇଁ ତୁମେ କ'ଣ କରିବାକୁ ଚାହଁ ?'' ସେ କହିଲେ, ''ସାର୍, ମୁଁ ବସ୍ତିବାସିନ୍ଦାଙ୍କ ପାଇଁ ଗୋଟିଏ ବିଦ୍ୟାଳୟ ଆରମ୍ଭ କରିବାକୁ ଚାହୁଁଛି । ସେଥିରେ କେବଳ ବସ୍ତି ପିଲାମାନେ ହିଁ ପଢ଼ିପାରିବେ । ସେହି ପିଲାମାନଙ୍କ ମଧ୍ୟରୁ କେହି ଡାକ୍ତର ଏବଂ ଇଞ୍ଜିନିୟର ହୁଅନ୍ତୁ, ଏହା ମୁଁ ଚାହେଁ, ଯେଉଁ ପିଲାମାନଙ୍କୁ ସମାଜ ଘୃଣିତ ଦୃଷ୍ଟିରେ ଦେଖେ ।'' ମୋ ଆଖିରେ ଲୁହ ଭରିଗଲା । ଏତେ ଛୋଟ ଝିଅ, ତାଙ୍କର ଚିନ୍ତାଧାରା କେତେ ଗଭୀର । ତା'ପରେ ମୁଁ ତାଙ୍କୁ ପଚାରିଲି, ''ଯଦି ତୁମେ ସ୍କୁଲ ପ୍ରତିଷ୍ଠା କରିବାକୁ ଚାହଁ ତା'ହେଲେ ତୁମର କ'ଣ ଦରକାର ? ''ମୁଁ ଚାହେଁ ଟଙ୍କା ଏବଂ ବନ୍ଧୁ, ଯେଉଁମାନେ ମୋତେ ସାହାଯ୍ୟ କରିବେ ।'' "ଏତିକିରେ କ'ଣ ହୋଇଯିବ ?" ଉଁ.... "ମୁଁ ପାଠ ପଢ଼ାଇବାର ପଦ୍ଧତି ଶିକ୍ଷାଲାଭ କରିବି ।" "ଟଙ୍କା ପାଇବା, ବନ୍ଧୁ ପାଇବା ଏବଂ ପାଠ ପଢ଼ାଇବାର ପଦ୍ଧତି ଶିକ୍ଷା କରିବା ପାଇଁ ତୁମେ କ'ଣ କରିବା ଉଚିତ ?" ତାଙ୍କର ଆଖି ଉଜ୍ଜ୍ୱଳ ଦିଶିଲା । ସେ କହିଲେ, "ମୁଁ ଶିକ୍ଷା ପଦ୍ଧତି ଉପରେ ଡିଗ୍ରୀ ହାସଲ କରିବି । ତା'ପରେ ଅନ୍ୟମାନଙ୍କ ସହ କିପରି ବନ୍ଧୁତ୍ୱ ସ୍ଥାପନ କରିହେବ ସେହି କଳା ହାସଲ କରିବି । ତା'ପରେ ଧନୀ ଲୋକମାନଙ୍କ ପାଖରେ ମୋର ସ୍ୱପ୍ନ କଥା ବୁଝାଇବି । ଯେଉଁମାନେ ହୃଦୟଙ୍ଗମ କରିବେ ଯେ, ମୋର ପରିକଳ୍ପନା- ସୁବିଧା ସୁଯୋଗରୁ ବଞ୍ଚିତ ହେଉଥିବା ପିଲାମାନଙ୍କ ପାଇଁ ନିୟୋଜିତ ହେବ, ସେମାନେ ଆର୍ଥିକ ସାହାଯ୍ୟର ହାତ ବଢ଼ାଇବେ ।" ''ତେଣୁ, ତୁମେ ବର୍ତ୍ତମାନ କ'ଣ କରିବା ଉଚିତ ?'' ସେ ବିଚଳିତ ହୋଇ କହିଲେ, ''ଓଃ, ବର୍ତ୍ତମାନ ମୁଁ ପାଠ ପଢ଼ା ଉପରେ ମନ ନିବେଶ କରିବି ଏବଂ ଭଲ ନମ୍ବର ରଖି ଉଚ୍ଚଶ୍ରେଣୀକୁ ଯିବି । ତା'ପରେ କଲେଜରେ ପଢ଼ିବି । ସାର୍, ମୁଁ ବର୍ତ୍ତମାନ ଗୋଟିଏ ଉପାୟ ପାଇଗଲି । ମୋର ସ୍ୱପ୍ନକୁ ସାକାର କରିବାକୁ ହେଲେ, ମୋତେ ବର୍ତ୍ତମାନ ଭଲ ପାଠ ପଢ଼ିବାକୁ ପଡ଼ିବ ।'' ଏହା ହେଉଛି ପ୍ରଚ୍ଛଦପଟରେ ଶ୍ରୀମତୀ ସସ୍ମିତା ସେନାପତିଙ୍କ କଥା ।



ତେଣୁ, ତୁମେ ଜୀବନର ଭବିଷ୍ୟତ ଲକ୍ଷ୍ୟ ସହିତ ବର୍ତ୍ତମାନର କାର୍ଯ୍ୟ ପ୍ରକ୍ରିୟାକୁ ସଂଯୋଗ କରିବା ଦରକାର ।

ବିଦ୍ୟାର୍ଥୀ ଅସାଧାରଣ ପ୍ରତିଭାର ଅଧିକାରୀ । ତୁମେ ମନେପକାଅ, ମୁଁ ବହୁବାର ଏହି କଥା ମୋ ଶ୍ରେଣୀରେ କହିଛି । କିନ୍ତୁ ଗୋଟିଏ ଛାତ୍ର, ମୋ ସ୍ମୃତି ମଧ୍ୟରେ ରହିଯାଇଛି । ସେ ହେଉଛି ଶ୍ରୀ ଶଙ୍କର ପାତ୍ରଙ୍କର

ବଡ଼ପୁଅ ଗୋପୀନାଥ । ସେ ଆଇ.ଆଇ.ଟି ପ୍ରବେଶିକା ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଯୋଗୁଁ କିମ୍ବା ଟେଲିମେଡ଼ିକାଲ ଚାକିରୀରେ ଜଣେ ଦକ୍ଷ କର୍ମଚାରୀ ହୋଇଥିବାରୁ ମୁଁ ତାକୁ ମନେରଖି ନାହିଁ । ତାକୁ ମନେ ରଖିବାର ଅନ୍ୟ ଏକ କାରଣ ଅଛି ।

ଥରେ ଡିସେମ୍ବର ମାସର ଶୀତୁଆ ସନ୍ଧ୍ୟାରେ ନନ୍ଦା ପାର୍କରେ ମୁଁ ପ୍ରତିଦିନ ପରି ସାନ୍ଧ୍ୟଭ୍ରମଣ କରୁଥିଲି । ଏହି ସମୟରେ ଗୋପୀନାଥ ଯିଏ କି ସେତେବେଳେ ୮ମ କିମ୍ବା ୯ମ ଶ୍ରେଣୀର ଛାତ୍ରଥିଲା, ନୀରବରେ ପାର୍କ ଭିତରକୁ ଆସିଲା ଏବଂ ମୋ ସହିତ ଚାଲିବାକୁ ଆରମ୍ଭ କଲା । ମୁଁ ତାକୁ ପଚାରିଲି, ''କିଛି ପଚାରିବାର ଅଛି କି ?'' ସଙ୍କୋଚ ଭାବରେ ସେ ମୋତେ କହିଲା, ''ସାର୍, ମୁଁ ଗୋଟିଏ ସମସ୍ୟାର ସମ୍ମୁଖୀନ ହେଉଛି । ମୁଁ ଆପଣଙ୍କ ଠାରୁ କିଛି ସାହାଯ୍ୟ ଆଶା କରୁଛି ।'' ମୁଁ ପଚାରିଲି, ''କି ପ୍ରକାର ସାହାଯ୍ୟ ।'' ସେ କହିଲା, ''ସାର୍, ଏମିତି କିଛି ପଦ୍ଧତି ଅଛି କି ଯାହା ଦ୍ୱାରା ମୁଁ ମୋର ମାନସିକ ଶକ୍ତି ବଢ଼ାଇପାରିବି ?'' ମୋର ଶିରା ପ୍ରଶିରାରେ ଶିହରଣ ଖେଳିଗଲା ! ସତେ ଯେପରି ସମଗ୍ର ବିଶ୍ୱ ନିଶ୍ଚଳ ହୋଇଗଲା ଏବଂ ମୋର ହୃଦୟରେ ଏକ ଅପୂର୍ବ ଆନନ୍ଦ ଭରିଗଲା । ଯେଉଁ ଛାତ୍ର ବା ଛାତ୍ରୀଙ୍କର ଜୀବନର ଲକ୍ଷ୍ୟକୁ ନେଇ ମନରେ ଆବେଗ ଥାଏ ଏବଂ ବର୍ତ୍ତମାନ ସେ କ'ଣ କରିବା ଉଚିତ, ଯାହା ଦ୍ୱାରା ସେ ବଡ଼ହେଲେ ଜୀବନର ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରିବେ, ଏହିଭଳି ଭାବନା ଥିବା ଛାତ୍ର ବା ଛାତ୍ରୀ ଏହିପରି ସମସ୍ୟାର ସମ୍ମୁଖୀନ ହୁଅନ୍ତି ।

ଗୋପୀନାଥ ଜାଣିଥିଲା ତାକୁ ଭଲ ଭାବରେ ପଢ଼ିବାକୁ ପଡ଼ିବ । କିନ୍ତୁ ସେ ମାନସିକ କ୍ଳାନ୍ତି ଏବଂ ବିରକ୍ତିବୋଧ ଅନୁଭବ କରୁଥିଲା । ଏହାର ଅର୍ଥ ନୁହେଁ ଯେ ତା'ର ପଢ଼ା ପ୍ରତି ଆଗ୍ରହ ନ ଥିଲା । ତୁମେ ଏଠାରେ ଏହି କଥାଟି ବୁଝି ପାରୁଛ ? ଯେହେତୁ ତା'ର ଲକ୍ଷ୍ୟ ସ୍ପଷ୍ଟ ଏବଂ ସେ ଦୈନନ୍ଦିନ କାର୍ଯ୍ୟକ୍ରମକୁ ତା ଜୀବନର ଲକ୍ଷ୍ୟସହ ସଂଯୋଗ କରିବାକୁ ସମର୍ଥ ଥିଲା, ତେଣୁ ତା'ର ପଢ଼ାପ୍ରତି ଗଭୀର ଆଗ୍ରହ ଥିଲା । କିନ୍ତୁ ସେ ଲଗାତର ଭାବରେ ଏକ ଘଣ୍ଟା ପଢ଼ିପାରୁ ନ ଥିଲା । ସେଥି ପାଇଁ ସେ ବିରକ୍ତିବୋଧ ଅନୁଭବ କରୁଥିଲା ।

**ବ୍ରହ୍ମଚର୍ଯ୍ୟ**

ଜୀବନର ଗୌରବ ହେଉଛି ବ୍ରହ୍ମଚର୍ଯ୍ୟ ।

– ସ୍ୱାମୀ ବିବେକାନନ୍ଦ

ଥରେ ଶାରୀରିକ ଦକ୍ଷତା ରଖିଥିବା ଜଣେ ବ୍ୟକ୍ତି ତାଙ୍କର ଦୃଢ଼ ମାଂସପେଶିର ନିୟନ୍ତ୍ରଣ ଏବଂ ଶାରୀରିକ କ୍ଷମତା ସ୍ୱାମୀ ଶିବାନନ୍ଦଙ୍କ ଆଗରେ ପ୍ରଦର୍ଶନ କଲେ । ସ୍ୱାମୀ ଶିବାନନ୍ଦ ଏହା ଦେଖି ମନ୍ତବ୍ୟ ଦେଲେ, ଏହି ଶାରୀରିକ ଦକ୍ଷତା ପାଇଁ ବ୍ରହ୍ମଚର୍ଯ୍ୟ ପାଳନ ଏକାନ୍ତ ଆବଶ୍ୟକ । ଜଣେ ଯେ କୌଣସି କାର୍ଯ୍ୟ ହାତକୁ ନେଉନା କାହିଁକି, ସଫଳତାର ଚାବିକାଠି ହେଉଛି ବ୍ରହ୍ମଚର୍ଯ୍ୟ ।

– ସ୍ୱାମୀ ଶିବାନନ୍ଦ<br>ଦ୍ୱିତୀୟ ଅଧ୍ୟକ୍ଷ ରାମକୃଷ୍ଣ ମଠ ଓ ମିଶନ

ତେଣୁ ମୁଁ ତାକୁ ପଚାରିଲି, ''ଆଚ୍ଛା, ପୁଅ, ତୁମେ ଖେଳା ଖେଳି କର କି ?'' ''ସାର୍, କେବଳ ଛୁଟି ଦିନମାନଙ୍କରେ କିମ୍ବା ରବିବାରରେ ।'' ''ମୁଁ କହୁଛି ତୁମେ ପ୍ରତିଦିନ ଅତିକମ୍‌ରେ ଅଧଘଣ୍ଟାଏ ଖେଳ । ସାଙ୍ଗମାନଙ୍କ ସହ ମିଶିବା ଏବଂ ଗପିବା କିପରି କର ?'' ''ହଁ ସାର୍, ପଢ଼ାଯାଇଥିବା ବିଷୟରେ ଆଲୋଚନା ପାଇଁ ମୁଁ କେତେକ ସାଙ୍ଗମାନଙ୍କ ସହ ମିଶେ ।''

''ଦେଖ ଗୋପୀନାଥ, ତୁମେ ସାଙ୍ଗମାନଙ୍କ ସହ ହସ ଖୁସିରେ କଥାବାର୍ତ୍ତା ହେବା ନିହାତି ଦରକାର । ମୁଁ କହୁନାହିଁ ସେମାନଙ୍କ ସହ ଘଣ୍ଟା ଘଣ୍ଟା ଧରି ବାଜେ ଗପସପ ହୁଅ । କିନ୍ତୁ କିଛି ହାଲୁକା କଥା, କିଛି ଗପ, କିଛି ମଜା କଥା, କିଛି ତର୍କ ବିତର୍କ ଜଣେ ଛାତ୍ର ପାଇଁ ଆବଶ୍ୟକ, କିନ୍ତୁ ତୁମେ ଏଥିରେ ଅଧିକ ଲିପ୍ତ ହେବା ଅନୁଚିତ । ଏହା କହି, ମୁଁ ତାକୁ କିଛି ମଜାଳିଆ କଥା ଶୁଣାଇଲି ଏବଂ ଟେଲିଭିଜନରେ ସମ୍ବାଦପାଠକର ଶୈଳୀକୁ ଅନୁକରଣ କରି କହିଲି । ଏହାଶୁଣି ଗୋପୀନାଥ ଏତେ ହସିଲା ଯେ ତା' ଆଖିରୁ ଲୁହ ବାହାରି ଆସିଲା । ତା'ପରେ ମାନସିକ ଶକ୍ତିର ସଂରକ୍ଷଣ ପାଇଁ ତାକୁ ମୁଁ କିଛି ସଂକ୍ଷିପ୍ତ ସୂଚନା ଦେଲି । କେବଳ ଗୋଟିଏ କାମ ଗୋଟିଏ ସମୟରେ କର । ଦୃଷ୍ଟାନ୍ତ ସ୍ୱରୂପ, ଅନେକ ପୁଅ, ଝିଅ ଟି.ଭି ଦେଖୁଥିବା ସମୟରେ ଭୋଜନ କରନ୍ତି । ଏହା ଦ୍ୱାରା ସେମାନଙ୍କ ମାନସିକ ଶକ୍ତିର କ୍ଷୟ ହୁଏ । କାର୍ଯ୍ୟକ୍ରମଟିକୁ ସମ୍ପୂର୍ଣ୍ଣ ଦେଖିସାରି ଚାଲିଆସ ଏବଂ ଶାନ୍ତ ମନରେ ଭୋଜନ କର । ଖାଦ୍ୟାଭ୍ୟାସ ପ୍ରତି ସମ୍ପୂର୍ଣ୍ଣ ଯତ୍ନବାନ ହୁଅ – ଧୀରେ ଧୀରେ ଖାଅ, ଖାଦ୍ୟକୁ ଭଲ ଭାବରେ ଚୋବାଅ, ତା'ପରେ ଢ଼ୋକିଦିଅ । ଖାଦ୍ୟକୁ ଗିଳିଦିଅ ନାହିଁ । 'ମୋର ପ୍ରଚୁର ଶକ୍ତି ଅଛି, ମୋର ସ୍ମରଣ ଶକ୍ତି ଖୁବ୍ ଭଲ, ମୁଁ ଠିକ୍ ସମୟରେ ଠିକ୍ କଥା ମନେ ପକାଇପାରେ' ଇତ୍ୟାଦି ସକାରାତ୍ମକ ଭାବନା ଖାଇବା ସମୟରେ ମନମଧ୍ୟରେ ଆଣିଲେ ଏହା ଖୁବ୍ ବିଶେଷ ଉପଯୋଗୀ ହେବ । ଏହି ସକାରାତ୍ମକ ଭାବନା ମନରେ ଶ୍ରଦ୍ଧା ସୃଷ୍ଟି କରାଏ । ଏହିପରି ଭାବରେ ମୁଁ ତାକୁ କିଛି କ୍ଷୁଦ୍ର କିନ୍ତୁ ମୂଲ୍ୟବାନ ସୂଚନା ଦେଲି । ସେତେବେଳକୁ ଆମେ ଘର ପାଖରେ ପହଞ୍ଚି ଯାଇଥିଲୁ । ରାସ୍ତାର ଏକ କୋଣରେ ମୁଁ ତାକୁ ଦୈନିକ କାର୍ଯ୍ୟର ଏକ କାର୍ଯ୍ୟ ନିର୍ଘଣ୍ଟ କିପରି ପ୍ରସ୍ତୁତ କରିବ, ସେ ବିଷୟରେ ଧାରଣା ଦେଲି । ମୁଁ କହିଲି, ''ଅନେକ ପିଲା କାର୍ଯ୍ୟନିର୍ଘଣ୍ଟ ପ୍ରସ୍ତୁତ କରିବା ପାଇଁ ଚେଷ୍ଟା କରନ୍ତି କିନ୍ତୁ ସେମାନେ ଏହା କରିପାରନ୍ତି ନାହିଁ, କାରଣ ଏକ ବ୍ୟବହାରଯୋଗ୍ୟ ଏବଂ ତାତ୍ପର୍ଯ୍ୟପୂର୍ଣ୍ଣ କାର୍ଯ୍ୟନିର୍ଘଣ୍ଟ ପ୍ରସ୍ତୁତ କରିବାର ଜ୍ଞାନ ସେମାନଙ୍କର ନ ଥାଏ । ଦିନକ ମଧ୍ୟରେ କେବଳ ତିନୋଟି କାର୍ଯ୍ୟ ପାଇଁ ନିର୍ଦ୍ଦିଷ୍ଟ ସମୟ ନିର୍ଦ୍ଧାରଣ କରିବା ହେଉଛି ସମୟ ନିର୍ଘଣ୍ଟର ମୂଳଭିତ୍ତି – ଏହି କାର୍ଯ୍ୟ ତିନୋଟି ହେଉଛି ଭୋଜନ କରିବା, ନିଦ୍ରା ଯିବା ଏବଂ ଅଧ୍ୟୟନ କରିବା । ତୁମର ଅନ୍ୟ କାର୍ଯ୍ୟଗୁଡ଼ିକୁ ସୁବିଧା ଅନୁଯାୟୀ ଭିନ୍ନ ଭିନ୍ନ ଦିନମାନଙ୍କରେ କରି ପାରିବ । ନିଦ୍ରା ଯିବା ଏବଂ ଶଯ୍ୟାତ୍ୟାଗ କରିବା ପାଇଁ ନିର୍ଦ୍ଦିଷ୍ଟ ସମୟ ସ୍ଥିର କର । ଏହି ସମୟକୁ କେବେ ପରିବର୍ତ୍ତନ କରିବ ନାହିଁ । ଏପରିକି ପରୀକ୍ଷା ସମୟରେ ମଧ୍ୟ । ସକାଳର ଜଳଖିଆ, ମଧ୍ୟାହ୍ନ ଭୋଜନ ଏବଂ ରାତ୍ରି ଭୋଜନ ପାଇଁ ସମୟ ସ୍ଥିର କର । ସକାଳ ଏବଂ ରାତ୍ରିରେ ପାଠପଢ଼ା ପାଇଁ ନିର୍ଦ୍ଦିଷ୍ଟ ସମୟ ସ୍ଥିର କର । ଏହି ସମୟ ଅପରିବର୍ତ୍ତନୀୟ ରଖ । ଦିନର ଅବଶିଷ୍ଟ ସମୟକୁ ସୁବିଧା ଅନୁସାରେ ତୁମେ ଦୈନିକ ଭିତ୍ତିରେ ବାଣ୍ଟି ଦେଇପାରିବ । ଏହିପରି ସମୟ ନିର୍ଘଣ୍ଟ ବ୍ୟବହାର ଯୋଗ୍ୟ ଏବଂ ତୁମେ ଏହାକୁ ସହଜରେ ଧରି ରଖି ପାରିବ ।''

''ଗୋପୀନାଥ ଜଣେ ମେଧାବୀ ଛାତ୍ର । ସେ ଖୁବ୍ ଦୃଢ଼ତାର ସହ ଏହି କଥାଗୁଡ଼ିକୁ କାର୍ଯ୍ୟରେ ଲଗାଇଲା ଏବଂ ତୁମେ ଦେଖ, ସେ ଆଜି ତା ଜୀବନରେ କ'ଣ ହାସଲ କରିଛି । ଟେଲିମେଡ଼ିକାଲ ସେବାରେ ସେ ଯୋଗ ଦେଇପାରିଛି । ଟେଲିମେଡ଼ିକାଲ ସେବା ଏକ ବିପ୍ଲବ, ଏହା ତୁମେ ଜାଣ ।''

ପ୍ରିୟ ଦିନେଶ, ତୁମେ ଜାଣ ମୁଁ ତୁମକୁ ଖୁବ୍ ଭଲ ପାଏ । ତେଣୁ ମୁଁ ତୁମକୁ ଆଜି ଗୋଟିଏ କଥା କହିବି, ଯାହା ଆଜି ପର୍ଯ୍ୟନ୍ତ କାହାକୁ କହିନାହିଁ । ବହୁଦିନ ତଳେ ମୁଁ ଯେତେବେଳେ ତୁମରି ବୟସର ଥିଲି ମୁଁ ବରାବର ବେଲୁଡ଼ ମଠକୁ ଯାଉଥିଲି ଏବଂ ସେଠାରେ ଜଣେ ସ୍ନେହଶୀଳ ସାଧୁଙ୍କ ସହିତ ଅନ୍ତରଙ୍ଗ ଭାବରେ କଥା

ହେଉଥିଲି । ମୁଁ ତାଙ୍କୁ ଦିନେ ଠିକ୍ ସେହି ପ୍ରଶ୍ନ ପଚାରିଥିଲି ଯାହା ତୁମେ ଆଜି ମୋତେ ପଚାରିଛ ! ମୋ ପ୍ରଶ୍ନରେ ସେହି ସାଧୁଙ୍କର ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠିଲା । ସେ ଅତି ମଧୁର ଏବଂ ଗମ୍ଭୀର କଣ୍ଠରେ କହିଲେ, ''ବ୍ରହ୍ମଚର୍ଯ୍ୟ ଅଭ୍ୟାସ କର, ବ୍ରହ୍ମଚର୍ଯ୍ୟ ଅଭ୍ୟାସ କର, ବ୍ରହ୍ମଚର୍ଯ୍ୟ ଅଭ୍ୟାସ କର ।'' ସେହି ଗୋଟିଏ କଥାକୁ ସେ ତିନିଥର କହିଲେ । ମୁଁ ସେତେବେଳେ ଛୋଟ ପିଲା ଏବଂ ଏହି ବ୍ରହ୍ମଚର୍ଯ୍ୟର ଅର୍ଥ କ'ଣ, ସେ ବିଷୟରେ ମୋର ତିଳେ ମାତ୍ର ଧାରଣା ନ ଥିଲା । ତାଙ୍କ ସହିତ ବାରମ୍ବାର ସାକ୍ଷାତ ଓ ଆଲୋଚନା ଦ୍ୱାରା, ଏହି ବ୍ରହ୍ମଚର୍ଯ୍ୟ ଅର୍ଥ କ'ଣ ମୁଁ ଶିକ୍ଷା କଲି ।

ମୁଁ ଲେଖା ଶେଷ କରିବା ପୂର୍ବରୁ, ମୋର ତୁମ ପାଇଁ ଗୋଟିଏ ଛୋଟିଆ ଉପହାର – ପ୍ରାର୍ଥନାର ଉପହାର । ଶୋଇବା ପୂର୍ବରୁ ପ୍ରତ୍ୟେକ ରାତ୍ରିରେ ଏହି ପ୍ରାର୍ଥନା କର – 'ହେ ଭଗବାନ, ମୋତେ ଉତ୍ତମ ଛାତ୍ରଟିଏ କରିଦିଅ ।' ତୁମକୁ ମୋର ଚିରନ୍ତନ ପ୍ରେମ ଓ ଶୁଭେଚ୍ଛା ଜଣାଉଛି ।

ତୁମର ଶୁଭାକାଙ୍କ୍ଷୀ
ଟି.କେ. ମିଶ୍ର

କ୍ରିଷ୍ଣା କୃତଜ୍ଞତାର ସହିତ ଚିଠିଟିକୁ ହୃଦୟରେ ସ୍ପର୍ଶ କଲା । ତା'ର ଅନେକ ପ୍ରଶ୍ନର ଉତ୍ତର ସେ ଏହି

**ଆମ ଜୀବନର ଲକ୍ଷ୍ୟ ମହାନ୍ ଏବଂ ନିଃସ୍ୱାର୍ଥପର ହେଉ**

ଏହି ଲକ୍ଷ୍ୟ ସହିତ ଆମର ବର୍ତ୍ତମାନର କାର୍ଯ୍ୟଧାରାକୁ ସଂଯୋଗ କରିବାକୁ ପଡ଼ିବ । ବର୍ତ୍ତମାନର କାର୍ଯ୍ୟଧାରାକୁ ଦକ୍ଷତାର ସହିତ ସଂପାଦନ କରିବାକୁ ହେଲେ ଆମର ମାନସିକ ଶକ୍ତିକୁ ସଂରକ୍ଷଣ କରିବା ଜରୁରି ।

– ମାର୍ଗାରେଟ୍ ମିଡ୍,
ଆମେରିକାର ନୃତତ୍ତ୍ୱବିତ୍

ଚିଠିରୁ ପାଇଯାଇଥିଲା । ଆନନ୍ଦିତ ଏବଂ ଉତ୍ସାହିତ ହୋଇ ସେ ଘର ସଫା କରିବା ଆରମ୍ଭ କଲା ।



# ଧରିତ୍ରୀ ଦିବସ










ଧରିତ୍ରୀ ଦିବସ ପ୍ରତିବର୍ଷ ଏପ୍ରିଲ ମାସ ୨୨ ତାରିଖରେ ସମଗ୍ର ବିଶ୍ୱରେ ପାଳନ କରାଯାଏ । ଏହି ଦିନଟି ଆଧୁନିକ ପରିବେଶ ସୁରକ୍ଷାର ଆନ୍ଦୋଳନ ଦିବସ ହିସାବରେ ୧୯୭୦ ମସିହାରୁ ପାଳିତ ହୋଇଆସୁଅଛି । ଆମେରିକାର ୱିଲ୍ କନ୍‌ସିନ୍ ର ସାଂସଦ ଗେଲର୍ଡ଼ ନେଲ୍‌ସନ୍ ଧରିତ୍ରୀ ଦିବସର ସଂସ୍ଥାପକ । ଜଳ, ସ୍ଥଳ ଏବଂ ଆକାଶରେ ପ୍ରଦୁଷଣ କମ୍ କରି ପୃଥିବୀମାତାଙ୍କୁ ସବୁଜ, ସୁନ୍ଦର ଏବଂ ନିର୍ମଳ କରିବା ଲକ୍ଷ୍ୟରେ ଏହା ପାଳନ କରାଯାଏ । ହିନ୍ଦୁ ଧର୍ମ ଶାସ୍ତ୍ର ଅଥର୍ବ ବେଦରେ ଥିବା ଭୂମିସୁକ୍ତମ୍‌ରେ ୬୩ଟି ଶ୍ଲୋକରେ ପୃଥିବୀ ମାତା ପ୍ରତି ସ୍ତୁତି କରାଯାଇଛି । ମଣିଷର ପ୍ରକୃତି ଉପରେ ଥିବା ନିର୍ଭରଶୀଳତା ଏବଂ ପ୍ରକୃତିକୁ କିପରି ସମ୍ମାନ ଦେବା ସେହି ବିଷୟରେ ଭୂମିସୁକ୍ତମ୍‌ରେ ସ୍ତୁତି କରାଯାଇଛି ।

ମାତା ଭୂମିଃ ପୁତ୍ରୋ ଅହମ୍ ପୃଥିବ୍ୟାଃ

ଭୂମି ସୁକ୍ତମ୍, ଅଥର୍ବ ବେଦ (୧୨.୧.୧୨)

ଭୂମି ହେଉଛି ମାତା ଏବଂ ସମଗ୍ର ମାନବ ଜାତି ତାହାର ପୁତ୍ର ବୋଲି ଏଥିରେ ଦର୍ଶିତ ହୋଇଛି । ବୃକ୍ଷ ହେଉଛି ଆମର ମାତା ଏବଂ ଏହାକୁ ଛେଦନ କରିବା ଅନୁଚିତ ।

ଧରିତ୍ରୀ ଦିବସରେ ଆମର ଚତୁଃପାର୍ଶ୍ୱରେ ବୃକ୍ଷ ଲଗାଇବା ଗୋଟିଏ ମୁଖ୍ୟ କାର୍ଯ୍ୟକ୍ରମ ।

**ବୃକ୍ଷ ଆମକୁ କିପରି ସାହାଯ୍ୟ କରେ ?**

★ ବାୟୁକୁ ଶୁଦ୍ଧ କରିବାରେ ସାହାଯ୍ୟ କରେ (ବାୟୁରେ ଅଙ୍ଗାରକାମ୍ଳ ଗ୍ୟାସର ପରିମାଣକୁ ସନ୍ତୁଳିତ କରେ)
★ ଜଳର ପୁନରାବର୍ତ୍ତକ ଘଟଣାରେ ସାହାଯ୍ୟ କରେ
★ ମାଟି ଧୋଇଯିବାରୁ ରକ୍ଷା କରେ
★ ଛାୟା ଦିଏ
★ ପବନ ଏବଂ ବର୍ଷାକୁ ନିୟନ୍ତ୍ରଣ କରେ
★ ପ୍ରାଣୀମାନଙ୍କର ଗୃହ ଭାବରେ କାର୍ଯ୍ୟ କରିଥାଏ
★ ପ୍ରାଣୀମାନଙ୍କୁ ଖାଦ୍ୟ ଯୋଗାଏ
★ ବାୟୁମଣ୍ଡଳର ତାପମାତ୍ରା ନିୟନ୍ତ୍ରଣରେ ମୁଖ୍ୟ ଭୂମିକା ବହନ କରିଥାଏ, ଇତ୍ୟାଦି ଇତ୍ୟାଦି ।

# ସୌର ଶକ୍ତି

ସୌରଶକ୍ତି ପୃଥିବୀରେ ଥିବା ଜୀବନ୍ତ ପ୍ରାଣୀମାନଙ୍କ ପାଇଁ ସବୁଠାରୁ ନିର୍ମଳ ଶକ୍ତିର ଉତ୍ସ । ଯଦିଓ ଅଳ୍ପକିଛି ପରିମାଣର ପ୍ରଦୂଷଣ ହୁଏ – Solar Panelର ନିର୍ମାଣ କରିବାରେ, ପରିବହନ କରିବାରେ ଏବଂ ସ୍ଥାପନ କରିବାରେ ।



୧)ସୌରଶକ୍ତିକୁ ବିଭିନ୍ନ ଉପାୟରେ ବ୍ୟବହାର କରାଯାଇପାରେ, ଯଥା- ଘରେ ରୋଷେଇ କରିବାଠାରୁ ଆରମ୍ଭ କରି ଘର ଥଣ୍ଡା କିମ୍ବା ଗରମ କରିବା, ଗାଡ଼ି ଇଞ୍ଜିନ୍‌କୁ ଶକ୍ତି ଯୋଗାଇବା, ଉଡ଼ାଜାହାଜ ଚଳାଇବା ଇତ୍ୟାଦି ।

୨) Micro Inverter ର ବ୍ୟବହାର କରି ପ୍ରତ୍ୟେକ Solar Panelରୁ ବାହାରୁଥିବା ଶକ୍ତିର ପରିମାଣ ବିଷୟରେ ଜାଣିହେବ ।



୩) July - 2012 ରେ ପ୍ରଥମ ଥର ପାଇଁ ସୌରଶକ୍ତି ଦ୍ୱାରା ଚାଳିତ ଉଡ଼ାଜାହାଜ ପୃଥିବୀର ଉପମହାଦେଶ ଗୁଡ଼ିକରେ 4000 ମାଇଲ୍ ଉଡ଼ିଥିଲା । ଏହାର ଉଦ୍ଦେଶ୍ୟ ଥିଲା ସୌରଶକ୍ତିକୁ ବିଶ୍ୱସନୀୟ ଶକ୍ତିର ଉତ୍ସ ଭାବେ ଜନସାଧାରଣଙ୍କୁ ଅବଗତ କରେଇବା ।

# ସାମନ୍ତ ଚନ୍ଦ୍ରଶେଖର

ସାମନ୍ତ ଚନ୍ଦ୍ରଶେଖର ଓଡ଼ିଶାରେ 'ପଠାଣି ସାମନ୍ତ' ନାମରେ ବହୁତ ଲୋକପ୍ରିୟ । ସେ ୧୮୩୫ ଖ୍ରୀଷ୍ଟାବ୍ଦରେ ଖଣ୍ଡପଡ଼ାଠାରେ ଜନ୍ମ ଗ୍ରହଣ କରିଥିଲେ । ଗ୍ରହ, ନକ୍ଷତ୍ର, ତାରା (Stellar bodies) ସମ୍ବନ୍ଧରେ ଗବେଷଣା କରି ସେ ତାଙ୍କର ଜୀବନ ଉତ୍ସର୍ଗ କରିଥିଲେ । 'ମାନଯନ୍ତ୍ର' ଭଳି ଉପକରଣ ପ୍ରସ୍ତୁତ କରି ସେ ସେଥିରେ ତାଙ୍କର ଗବେଷଣା କରୁଥିଲେ ।



(ସାମନ୍ତ ଚନ୍ଦ୍ରଶେଖର)









ସାମନ୍ତ ଚନ୍ଦ୍ରଶେଖର 'ସିଦ୍ଧାନ୍ତ ଦର୍ପଣ' ନାମକ ଏକ ପୁସ୍ତକ ସଂସ୍କୃତ ଭାଷାରେ ରଚନା କରିଛନ୍ତି । ସେଥିରେ ୨୨୮୪ଟି ସଂସ୍କୃତ ଶ୍ଳୋକ ସେ ନିଜେ ରଚନା କରିଛନ୍ତି ଏବଂ ୨୧୬ଟି ଶ୍ଳୋକ ଅନ୍ୟାନ୍ୟ ଲେଖକଙ୍କର ।

ସାମନ୍ତ ଚନ୍ଦ୍ରଶେଖରଙ୍କ ରଚିତ କୃତି ରେଭେନ୍‌ସା କଲେଜର ପ୍ରଫେସର ଯୋଗେଶ ଚନ୍ଦ୍ର ରାୟଙ୍କ ଦ୍ୱାରା ଅନୁବାଦ ହୋଇ ପ୍ରସିଦ୍ଧି ଲାଭ କରିଥିଲା ।

ଖଗୋଲ ବିଜ୍ଞାନ କ୍ଷେତ୍ରରେ ତାଙ୍କର ଥିବା ଅତୁଳନୀୟ ଅବଦାନ ପାଇଁ ତାଙ୍କୁ ପୁରୀ ଗଜପତିଙ୍କ ଦ୍ୱାରା ୧୮୭୬ ମସିହାରେ 'ହରିଚନ୍ଦନ ମହାପାତ୍ର' ସମ୍ମାନ ପ୍ରଦାନ କରାଯାଇଥିଲା । ଏବଂ ୧୮୯୩ରେ Governor General of India ଙ୍କ ଦ୍ୱାରା 'ମହାମହୋପାଧ୍ୟାୟ' ସମ୍ମାନ ପ୍ରଦାନ କରାଯାଇଥିଲା । ତାଙ୍କର ୧୯୦୪ ମସିହା June, 11 ରେ ଦେହାନ୍ତ ହୋଇଥିଲା ।



## ମୋତେ ଗୋଟିଏ ପଦକ ମିଳି ସାରିଛି

ସହରରେ ପଢୁଥିବା ପିଲାମାନେ ଖରାଛୁଟିରେ ଗାଁକୁ ଆସିଥିଲେ । ଥରେ ସନ୍ଧ୍ୟା ସମୟରେ ଏହି ପିଲାମାନେ ବୁଢ଼ାଅଜାଙ୍କୁ ଘେରି ବସିଥିଲେ । ଏହିପରି ସେମାନେ ପ୍ରତିଦିନ ସନ୍ଧ୍ୟା ସମୟ କଟାଉଥିଲେ । ପ୍ରତିସନ୍ଧ୍ୟାରେ ବୁଢ଼ାଅଜା ପିଲାମାନଙ୍କୁ ବୀରପୁରୁଷମାନଙ୍କ ଯୁଦ୍ଧ ବିଷୟ, ଜହ୍ନମାମୁଁ ଓ ନକ୍ଷତ୍ରମାଳା, ଦେବତା ଓ ଦାନବ, କାଳ୍ପନିକ ଏବଂ ପରିରାଇଜର କାହାଣୀ ଶୁଣାଉଥାନ୍ତି । ସେଦିନ ଥିଲା ଖରାଛୁଟିର ଶେଷଦିନ । ତା'ପର ଦିନ ସବୁପିଲା ସହରରେ ଥିବା ସେମାନଙ୍କ ନିଜ ନିଜ ଘରକୁ ଫେରିଯିବେ ।

ବୁଢ଼ାଅଜା ତାଙ୍କର ଯୁବକ ସମୟରେ ଜଣେ ଉଚ୍ଚକୋଟିର କ୍ଷୁଦ୍ରଗଳ୍ପ ଲେଖକ ଥିଲେ । ସେ ପିଲାମାନଙ୍କୁ କହିଲେ, "ଦେଖ ପିଲାଏ, ଆସନ୍ତାକାଲି ତୁମେମାନେ ମୋତେ ଛାଡ଼ି ଚାଲିଯିବ । ତୁମର ଆସନ୍ତା ଖରାଛୁଟି ପର୍ଯ୍ୟନ୍ତ, ତୁମମାନଙ୍କୁ ଦେଖା କରିବାକୁ ମୋତେ ଗୋଟିଏ ବର୍ଷ ଅପେକ୍ଷା କରିବାକୁ ପଡ଼ିବ । ମୁଁ ଜାଣେନାହିଁ ଭଗବାନ କେତେବେଳେ ମୋତେ ଡାକରା ଦେବେ । କିଛି ବର୍ଷ ପୂର୍ବରୁ ମୁଁ ଗୋଟିଏ ଛୋଟ ପୁସ୍ତକ ରଚନା କରିଥିଲି ; ଯାହା ଏପର୍ଯ୍ୟନ୍ତ ପ୍ରକାଶ ପାଇ ନାହିଁ । ଏହା ଏକ ଗଳ୍ପ



ପୁସ୍ତକ । ତୁମମାନଙ୍କୁ ଏହି ଗଳ୍ପଗୁଡ଼ିକ ମହାନ୍ ନାରୀ ଓ ପୁରୁଷରେ ପରିଣତ କରିବ । ପ୍ରକୃତରେ ତୁମେମାନେ କେତେବେଳେ ମହାନ୍ ହେବ, ତୁମେ ଜାଣ ? ଯେତେବେଳେ ତୁମର ହୃଦୟ ପ୍ରସାରିତ ହେବ ଏବଂ ସମଗ୍ର ବିଶ୍ୱକୁ ନିଜର କରିବା ପାଇଁ ଚେଷ୍ଟା କରିବ । ମୁଁ ଆଜି କିଛି ଗଳ୍ପ ଏହି ବହିରୁ ପଢ଼ି ଶୁଣାଇବି ।"

ସେ ଗପ ପଢ଼ା ଆରମ୍ଭ କଲେ । ସେ ଗପ ପଢୁଥିଲା ବେଳେ ତାଙ୍କ ସ୍ୱରରେ ସେଦିନ ଏକ ଚମତ୍କାରିତା ଥିଲା ଭଳି ଜଣା ପଡୁଥିଲା । ବୁଢ଼ାଅଜାଙ୍କର ପ୍ରତ୍ୟେକ ଶବ୍ଦ ପିଲାମାନଙ୍କ କୋମଳ ମନରେ ରେଖାପାତ କରିଥିଲା । ଅନେକ ଅଜଣା ଅନୁଭୂତି ଆଣିଦେଇଥିଲା, ନୂତନ ଆଶାର ସଂଚାର କରିଥିଲା, ନୂତନ ରଙ୍ଗିନ୍ ସ୍ୱପ୍ନ ଆଣିଥିଲା ଏବଂ ପ୍ରତ୍ୟେକଙ୍କ ମନରେ ଦୃଢ଼ ଆଶାର ସଂଚାର କରିଦେଇଥିଲା ଯେ – "ମୁଁ ମଧ୍ୟ ନିଶ୍ଚିତ ଭାବରେ ମୋ ଜୀବନରେ ଏହି ଗୁଣଗୁଡ଼ିକୁ ପ୍ରକାଶ କରିବି ।"

ବୃଦ୍ଧବ୍ୟକ୍ତି ଜଣକ ପଢ଼ି ଶୁଣାଇଲେ :

ନିତିନ୍ ହାଇସ୍କୁଲରେ ପଢୁଥିଲା । ୧୬ ବର୍ଷରୁ କମ୍ ରାଜ୍ୟସ୍ତରୀୟ କ୍ରୀଡ଼ା ପ୍ରତିଯୋଗୀତାରେ ଭାଗ ନେବାପାଇଁ ସେ ପ୍ରବଳ ଆଗ୍ରହୀ ଓ ବ୍ୟଗ୍ର ଥିଲା । ତା'ର ବାପା ମା ପ୍ରତ୍ୟାଶୀତ ଭାବରେ ଦର୍ଶକ ଗ୍ୟାଲେରୀରୁ ଚାହିଁ ରହିଥିଲେ । ସେ ପ୍ରଥମ ଦୌଡ଼ରେ ସ୍ୱର୍ଣ୍ଣପଦକ ଲାଭ କରିଥିଲା । ଦର୍ଶକମାନଙ୍କର ଉତ୍ସାହିତ ଧ୍ୱନି ଏବଂ ସ୍ୱର୍ଣ୍ଣପଦକ ପାଇଁ ସେ ଗର୍ବ ଅନୁଭବ କରୁଥିଲା ।

ତା'ପରେ ସେ ଦ୍ୱିତୀୟ ଦୌଡ଼ରେ ଭାଗନେଲା । ଦ୍ୱିତୀୟ ସ୍ୱର୍ଣ୍ଣପଦକଟି ଲାଭ କରିବାର ଠିକ୍ ଶେଷ ମୁହୂର୍ତ୍ତରେ, ସେ ହଠାତ୍ ଅଟକି ଗଲା ଏବଂ ଦୌଡ଼ ମାର୍ଗରୁ ବାହାରିଗଲା । ତା'ବାପା ମା ତାକୁ କୋମଳ ଭାବରେ ପଚାରିଲେ, ''ତୁମେ ଏପରି କାହିଁକି କଲ, ଦୌଡ଼ା ଚାଲୁ ରଖିଥିଲେ, ଜିତି ପାରିଥାନ୍ତ ।''

ନିତିନ୍ ବିନମ୍ର ଭାବରେ ଉତ୍ତର ଦେଲା, ''କିନ୍ତୁ ମା, ମୁଁ ଗୋଟିଏ ପଦକ ପାଇ ସାରିଛି । ସନ୍ତୋଷ ଏ ପର୍ଯ୍ୟନ୍ତ ପଦକ ପାଇ ନାହିଁ ।''

ବୃଦ୍ଧ ବ୍ୟକ୍ତି କହିଲେ, ''ଏହା ଏପରି ଏକ ଘଟଣା, ଯେଉଁଥିରେ ଜଣେ ଅନ୍ୟ ଜଣଙ୍କର ଆନନ୍ଦରେ ଆନନ୍ଦିତ ହୁଏ ।

ତା'ପରେ ସେ ଜଣେ ଦୟାଳୁ ଦନ୍ତ ଚିକିତ୍ସକଙ୍କ ଗଳ୍ପ ପଢ଼ିଲେ ।

ଅଜୟ ଦାନ୍ତରେ ଭୀଷଣ ଯନ୍ତ୍ରଣା ଅନୁଭବ କରୁଥିଲା । ଜଣେ ଡାକ୍ତରଙ୍କୁ ଦେଖା କରିବା ତା' ପାଇଁ ଅତ୍ୟନ୍ତ ଜରୁରି ଥିଲା କିନ୍ତୁ କିପରି ସେ ଦେଖା କରିବ ? ସେ ଏତେ ଗରିବ ଥିଲା ଯେ ଚିକିତ୍ସା ଖର୍ଚ୍ଚ ଦେଇପାରିବ ନାହିଁ । ସେ ଜଣେ ଦନ୍ତ ଚିକିତ୍ସକଙ୍କୁ ଦାନ୍ତ ଦେଖାଇ, ଦାନ୍ତ ନ ଓପାଡ଼ି କିମ୍ବା ଚିକିତ୍ସା ନ କରି, କେବଳ ଏକ ଚିଠା ଆଣିପାରେ । ଏହି କଥା ଭାବି ସେ ନିକଟରେ ଥିବା ଜଣେ ଦନ୍ତ ଚିକିତ୍ସକଙ୍କ ପାଖକୁ ଗଲା ।

ଦନ୍ତ ଚିକିତ୍ସକ – ହଁ, ତୁମର ତିନୋଟି ଦାନ୍ତ ଖରାପ ହୋଇଯାଇଛି ।

ଅଜୟ – ମୁଁ ତାହା ଭଲଭାବରେ ଜାଣେ, ସାର୍ ।

ଦନ୍ତ ଚିକିତ୍ସକ – ବ୍ୟସ୍ତ ହୁଅ ନାହିଁ । ମୁଁ ଠିକ୍ କରିଦେବି ।

ଅଜୟ – ନା, ଡାକ୍ତରବାବୁ । ଆପଣଙ୍କୁ ପାଉଣା ଦେବା ପାଇଁ ମୋ ପାଖରେ ଟଙ୍କା ନାହିଁ ।

### ଏହା ତୁମ ଉପରେ ନିର୍ଭର କରୁଛି

ଏକ ସଂଗୀତ ଗୋଟିଏ ମୁହୂର୍ତ୍ତକୁ ଚମକାଇ ଦେଇପାରେ ।
ଏକ ପୁଷ୍ପ ଏକ ସ୍ୱପ୍ନର ଜାଗରଣ କରେ ।
ଏକ ବୃକ୍ଷ ଏକ ଜଙ୍ଗଲ ସୃଷ୍ଟି କରିପାରେ ।
ଏକ ପକ୍ଷୀ ବସନ୍ତର ବାର୍ତ୍ତାବହନ କରେ ।
ଏକ ମୃଦୁହସ ବନ୍ଧୁତ୍ୱ ଆରମ୍ଭ କରେ ।
ଏକ ଆଲିଙ୍ଗନ ଆନନ୍ଦ ପ୍ରଦାନ କରେ ।
ଏକ ତାରା ସମୁଦ୍ରରେ ଜାହାଜକୁ ବାଟ ଦେଖାଏ ।
ଏକ ଭାବନା ଲକ୍ଷ୍ୟସ୍ଥଳ ନିର୍ମାଣ କରେ ।
ଏକ ମତ ଗୋଟିଏ ଦେଶକୁ ବଦଳାଇ ପାରେ ।
ଏକ ସୂର୍ଯ୍ୟରଶ୍ମି ଗୋଟିଏ ଗୃହକୁ ଆଲୋକିତ କରେ ।
ଏକ ହସ ବିଷାଦକୁ ଦୂର କରେ ।
ଏକ ଆଶା ଆମର ମନକୁ ବଡ଼ କରି ଦିଏ ।
ଏକ ସ୍ପର୍ଶ ତୁମକୁ ସତର୍କ କରାଇ ଦିଏ ।
ଏକ ଜୀବନ ଅତି ଗୁରୁତ୍ୱପୂର୍ଣ୍ଣ ହୋଇପାରେ ।
ଦେଖ, ଏହା ତୁମ ଉପରେ ନିର୍ଭର କରେ ।

– ଅଜ୍ଞାତ

ଦନ୍ତ ଚିକିତ୍ସକ – ତୁମେ କ'ଣ ସରକାରୀ ମହାବିଦ୍ୟାଳୟରେ ପଢୁଛ କି?

ଅଜୟ – ହଁ ସାର୍ । ସେଥିରେ ଆପଣଙ୍କ ଲାଭ କ'ଣ ?

ଦନ୍ତ ଚିକିତ୍ସକ – ସ୍ନାତକ ପଢ଼ାପରେ, ତୁମେ କ'ଣ ଗୋଟିଏ ଚାକିରୀ ପାଇବା ପାଇଁ ଯୋଜନା କରିଛ ?

ଅଜୟ – ହଁ ସାର୍ । ଏହି ଯୋଜନା ମୋର ଅଛି ।

ଦନ୍ତ ଚିକିତ୍ସକ – ଠିକ୍ ଅଛି, ସେତେବେଳେ ତୁମେ ମୋ ପାଉଣା ଦେଇଦେବ । ବର୍ତ୍ତମାନ ତୁମେ ତୁମ ପାଠପଢ଼ାରେ ମନୋ ନିବେଶ କର ଏବଂ ତୁମର ଦାନ୍ତର ସମସ୍ୟା ମୋ ଉପରେ ଛାଡ଼ିଦିଅ ।

ଏହି ଘଟଣାକୁ ଅଜୟ କେବେ ଭୁଲି ପାରିଲା ନାହିଁ । ଏହା ତା' ଦୃଷ୍ଟିଭଙ୍ଗିରେ ସାରା ଜୀବନ ପାଇଁ ପରିବର୍ତ୍ତନ ଆଣିଦେଲା ।

ତା' ପରେ ବୁଢ଼ାଅଜା ଅସୁନ୍ଦର ଜୟପାଲଙ୍କ ବିଷୟରେ ଏକ ଅଦ୍ଭୁତ ଗଳ୍ପ ପଢ଼ିଲେ ।

**ସେମାନେ ବଞ୍ଚନ୍ତି ଯେଉଁମାନେ ଅନ୍ୟମାନଙ୍କ ପାଇଁ ବଞ୍ଚିଥାନ୍ତି ।**

**– ସ୍ୱାମୀ ବିବେକାନନ୍ଦ**

ଯଦିଓ ତୁମେ ଅନେକ ରୋଜଗାର କରିଛ ତଥାପି ତୁମେ ଗୋଟିଏ ଦିନ ଭଲରେ ଅତିବାହିତ କରି ନାହଁ, ଯେ ପର୍ଯ୍ୟନ୍ତ ତୁମେ ସେହିମାନଙ୍କ ପାଇଁ କିଛି କରିନାହଁ, ଯେଉଁମାନଙ୍କ ଠାରୁ ତୁମର କିଛି ପାଇବାର ଆଶା ନାହିଁ ।

– ରୁଥ୍ ସ୍ମେଲଜର

ଜୟପାଲ ଜଣେ ଛାତ୍ର ଥିଲେ । ସେ ସବୁଦୃଷ୍ଟିରୁ ସାଧାରଣ ଥିଲେ, କିନ୍ତୁ ତାଙ୍କର ମୁହଁ ଥିଲା ବିକୃତ ଏବଂ ଅସୁନ୍ଦର । ତାଙ୍କର ସାଙ୍ଗମାନେ ତାଙ୍କ ପଛରେ ହସୁଥିଲେ ଏବଂ ବ୍ୟଙ୍ଗ କରୁଥିଲେ । ସେଥିପାଇଁ ଜୟପାଲ ଦୁଃଖିତ ଥିଲେ ।

'ଶୁଣ ପିଲାମାନେ,' ଶିକ୍ଷକ କହିଲେ, 'ପ୍ରତ୍ୟେକ ଚେହେରାର ନିଜସ୍ୱ ସୌନ୍ଦର୍ଯ୍ୟ ଅଛି, ନିଜସ୍ୱ ସଙ୍ଗତି ଅଛି । କେଉଁଟି ସୁନ୍ଦର ବା ଅସୁନ୍ଦର ଏ ବିଷୟରେ ତୁମର ସମ୍ପୂର୍ଣ୍ଣ ଧାରଣା ନାହିଁ, ସେଥି ପାଇଁ ତୁମେ ଜୟପାଲଙ୍କ ମୁହଁର ସୌନ୍ଦର୍ଯ୍ୟ ଉପଲବ୍ଧି କରିପାରୁ ନାହଁ । ତା' ସହିତ କଥା ହେବା ସମୟରେ କିମ୍ବା ତାକୁ ଦେଖୁଥିବା ସମୟରେ, ତୁମେ ଜାଣିବା ଉଚିତ ଯେ, ସେ ମଧ୍ୟ ତୁମମାନଙ୍କପରି ଭଗବାନଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ଜଣେ ମନୁଷ୍ୟ । ତାକୁ ଭଗବାନ ଏପରି ଭାବରେ ଗଢ଼ିବାର କାରଣ, ତୁମେମାନେ ଜାଣନାହିଁ । ତୁମେମାନେ ଏହି କଥାରେ ବିଶ୍ୱାସ ରଖ, ତା' ଭିତରେ ତୁମେ ଏକ ମହତ୍ୱପୂର୍ଣ୍ଣ ବନ୍ଧୁ ଲାଭ କରିବ ଏବଂ ତୁମେ ତାକୁ ଭଲ ପାଇବ । ତୁମେ ତାକୁ ଥରେ ଭଲ ପାଅ, ସେ ସୁନ୍ଦର ନ ହେଲେ ବି ତୁମକୁ ସମ୍ପୂର୍ଣ୍ଣ ସାଧାରଣ ଭଳି ଜଣା ପଡ଼ିବ ।'

କେତେକ ପିଲା ଶିକ୍ଷକଙ୍କ କଥାରେ ପ୍ରଭାବିତ ହେଲେ । ଏପରିକି କିଛି ପିଲା ତାଙ୍କ କଥାକୁ ବୁଝି ପାରି ନ ଥିଲେ । କିନ୍ତୁ ଜୟପାଲ ବନ୍ଧୁହୀନ ଏବଂ ଦୁଃଖିତ ହୋଇ ରହିଲା ।

ଦିନେ ଜୟପାଲ ବଜାରକୁ ଯାଇଥିଲା । ଗୋଟିଏ ଦୋକାନ ଆଗରେ ଦର୍ପଣଟିଏ ପଡ଼ିଥିବାର ସେ

ଦେଖିଲା । ବାହାରେ ଦର୍ପଣଟି କାହିଁକି ପଡ଼ିଛି ବୋଲି ସେ ଦୋକାନୀକୁ ପଚାରିଲା । ଦୋକାନୀ ଜଣଙ୍କ କହିଲେ ଯେ ଏହି ଦର୍ପଣଟି ଏକ ତ୍ରୁଟିଯୁକ୍ତ ଦର୍ପଣ, ଯେଉଁଥିରେ, ଜଣଙ୍କର ମୁହଁ ବିକୃତ ଦେଖାଯାଏ, ତେଣୁ ସେ ଏହାକୁ ଫୋପାଡ଼ି ଦେଇଛନ୍ତି । ଜୟପାଲ ସେହି ଦର୍ପଣରେ ନିଜର ମୁହଁ ଦେଖିଲା । ତା' ମୁହଁଟି ସୁନ୍ଦର ଦେଖାଯାଉଥିଲା । ଦର୍ପଣର ବୈଚିତ୍ର୍ୟ ତା' ମୁହଁରେ ଏକ ନୂତନ ଚେହେରା ଦେଲା ।

ଦର୍ପଣରେ ଥିବା ତ୍ରୁଟି ମୁହଁର ଅଂଶଗୁଡ଼ିକୁ ପୁନଃ ସଜ୍ଜୀକରଣ କରି ପ୍ରତିଫଳନ କରୁଥିଲା । ତେଣୁ ଗୋଟିଏ ସୁନ୍ଦର ମୁହଁ ଦର୍ପଣରେ ବିକୃତ ଦେଖାଯାଉଥିଲା । ଏହି ପଦ୍ଧତିଟି ମଧ୍ୟ ବିକୃତ ମୁହଁ ପାଇଁ କାର୍ଯ୍ୟ କରୁଥିଲା । ଫଳ ସ୍ୱରୂପ ଦର୍ପଣଟି ବିକୃତ ମୁହଁର ଅଂଶଗୁଡ଼ିକୁ ପୁନଃ ସଜ୍ଜୀକରଣ କରି ପ୍ରତିଫଳନରେ ଏକ ସୁନ୍ଦର ମୁହଁ ସୃଷ୍ଟି କଲା ।



ଜୟପାଲ ଖୁବ ଗଭୀର ଭାବରେ ଚିନ୍ତା କଲା, ଦର୍ପଣଟି କିଛି ଅବାସ୍ତବ ଦେଖାଇଲା କି ? ନା, ସମ୍ଭବତଃ ଏହା ପ୍ରତିଫଳନକୁ ବିକୃତ କରି ଦେଉଥିଲା । କିନ୍ତୁ ଏହା କେବଳ ତା' ସମ୍ମୁଖରେ ଥିବା ବସ୍ତୁର ପ୍ରତିରୂପ ଦେଖାଉଥିଲା । ତାହା ନୂଆ କିଛି ଯୋଗ କରୁ ନ ଥିଲା । ତେଣୁ ସେ ହୃଦୟଙ୍ଗମ କଲା ଯେ ଦର୍ପଣ ସମ୍ମୁଖରେ ଯେଉଁ ବସ୍ତୁ ନାହିଁ ତାହାର ସେ ପ୍ରତିଫଳନ କରୁ ନାହିଁ । ସେ ଦର୍ପଣରେ ଦେଖିଥିବା ସଂଗତି ଓ ସୌନ୍ଦର୍ଯ୍ୟ ତା' ନିଜ ଭିତରେ ଥିଲା, ସେଗୁଡ଼ିକୁ ଦର୍ପଣଟି କେବଳ ପୁନଃ ସଜ୍ଜୀକରଣ କଲା ।

ସେ ଅଧିକରୁ ଅଧିକ ଅନ୍ତର୍ମୁଖି ହେବାକୁ ଲାଗିଲା । ବର୍ତ୍ତମାନ ସେ ତା'ର ଅନ୍ତର୍ନିହିତ ଗୁଣ ଉପରେ ମନୋନିବେଶ କଲା । ତା' ଚେହେରାରେ ଅନ୍ୟମାନେ ଯାହା ଦେଖୁଥିଲେ, ସେ ବିଷୟକୁ ନେଇ ସେ ସ୍ୱାଭାବିକ ଭାବେ ବିବ୍ରତ ହେଲା ନାହିଁ । ଆଶ୍ଚର୍ଯ୍ୟ ଭାବରେ କ୍ରମେ କ୍ରମେ, ଅନ୍ୟମାନେ ମଧ୍ୟ ତା' ଚେହେରାରେ ଥିବା ଅସୁନ୍ଦରତା ଦେଖିବା ବନ୍ଦ କରିଦେଲେ ।

ଏହା ଏକ ନିୟମ ଯେ ଆମ ଭିତରେ ଯେଉଁ ଗୁଣଗୁଡ଼ିକ ଅଛି ବୋଲି ଆମେ ବିଶ୍ୱାସ କରୁ, ଲୋକମାନେ ତାହା ହିଁ ଦେଖିଥାନ୍ତି ।

ସୂର୍ଯ୍ୟ ଅସ୍ତ ହୋଇ ଯାଇଥିଲେ । କିନ୍ତୁ ବୁଢ଼ାଅଜାଙ୍କ କଥାରେ ପିଲାମାନେ ଏପରି ମୋହିତ ହୋଇଯାଇଥିଲେ ଯେ ଆଲୁଅ ଜାଳିବା ପାଇଁ କେହି ମନେ ପକାଇ ପାରି ନ ଥିଲେ । କିନ୍ତୁ ଗଳ୍ପ ବନ୍ଦ ହେଲା ନାହିଁ । ବୁଢ଼ା ଅଜା କ'ଣ ଅନ୍ଧାରରେ ପଢ଼ି ପାରୁଥିଲେ କି ? ନା, ସେ ବହି ପଢ଼ିବା ଦରକାର କରୁ ନ ଥିଲେ । ପ୍ରକୃତରେ ବହିଟି ତାଙ୍କ ମନରେ ଥିଲା । ତାଙ୍କର ମନଟି ଉଜ୍ଜ୍ୱଳ ଥିଲା । ଗଳ୍ପ କହୁଥିବା ବୁଢ଼ା ଅଜାଙ୍କୁ ଦେଖିବା

ପରିବର୍ତ୍ତେ ସେମାନେ କେବଳ ତାଙ୍କର ସ୍ୱର ଶୁଣିପାରୁଥିଲେ । ଏହା ପିଲାମାନଙ୍କ ମନରେ ଏକ ଆଧ୍ୟାତ୍ମିକ ସ୍ପର୍ଶ ଦେଇଥିଲା ।

ତାଙ୍କର ସ୍ୱର ସୂଚେଇ ଦେଉଥିଲା, ''ସବୁବେଳେ ସମ୍ପୂର୍ଣ୍ଣ ଛବିଟିକୁ ଦେଖ, ତା'ପରେ ତୁମେ ସ୍ପଷ୍ଟ ଭାବରେ ସବୁ ବୁଝିପାରିବ । ସମ୍ପୂର୍ଣ୍ଣ ଛବି ଦେଖିବା ବା ପୂର୍ଣ୍ଣାଙ୍ଗ ଦୃଷ୍ଟିର ଅର୍ଥ ହୃଦୟକୁ ବିସ୍ତାରିତ କରିବା ।''

ତା'ପରେ ପରିବେଶ ବିଜ୍ଞାନର ଗଳ୍ପ ଆରମ୍ଭ ହେଲା :

ଥରେ କୃଷି ମନ୍ତ୍ରଣାଳୟ ବିଜ୍ଞପ୍ତି ଜାରି କଲେ ଯେ ଘରଚଟିଆ ଚଢ଼େଇ ସସ୍ୟ କ୍ଷେତ ପ୍ରତି ବିପଦ ଏବଂ ସେମାନଙ୍କୁ ମାରିଦେବା ଜରୁରି । ଘରଚଟିଆମାନଙ୍କୁ ମାରିଦେବା ପରେ, ଦଳଦଳ ପଙ୍ଗପାଳ, ଯେଉଁମାନଙ୍କୁ ଘରଚଟିଆ ଖାଇ ଦେଉଥିଲେ, ସେମାନେ ସସ୍ୟ କ୍ଷେତରେ ମାଡ଼ିଗଲେ ଏବଂ ସସ୍ୟ ସବୁକୁ ନଷ୍ଟ କରିଦେଲେ ।

ତା'ପରେ କୃଷି ମନ୍ତ୍ରଣାଳୟ ଦାମୀ କୀଟନାଶକ ବ୍ୟବହାର କଲେ । କୀଟନାଶକ ପ୍ରୟୋଗ ଯୋଗୁଁ ଖାଦ୍ୟସସ୍ୟ ମହଙ୍ଗା ହେଲା । ଏହି କୀଟନାଶକଗୁଡ଼ିକ ମଧ୍ୟ ସ୍ୱାସ୍ଥ୍ୟ ସମସ୍ୟା ସୃଷ୍ଟି କଲା ।

ସେମାନେ ବହୁ ବିଳମ୍ବରେ ଆବିଷ୍କାର କଲେ ଯେ ସସ୍ୟ ଖାଇ ବଞ୍ଚୁଥିବା ଘରଚଟିଆମାନେ ଖାଦ୍ୟସସ୍ୟକୁ ସ୍ୱାସ୍ଥ୍ୟକର ଏବଂ ଶସ୍ତା କରିବାରେ ସହାୟକ ଥିଲେ ।

ଗୋଟିଏ ଝିଅ ଏବଂ ଗୋଟିଏ ବ୍ରାହ୍ମଣୀ ବେଙ୍ଗ ସମ୍ବନ୍ଧୀୟ ଏକ ମନୋମୁଗ୍ଧକର ଗଳ୍ପ ଆରମ୍ଭ ହେଲା :

ଜଗଦୀଶ ତାଙ୍କ ଛୋଟ ଝିଅ ଶ୍ୱେତାକୁ କହିଲେ, ''ଶ୍ୱେତା, ତୁ ଯଦି ବଗିଚାରୁ ସବୁ ଘାସ କାଟିଦେବୁ, ସୁପର ବଜାରରେ ତୁ ପସନ୍ଦ କରିଥିବା ଡ୍ରେସ୍‌ଟି ମୁଁ ତୋ ପାଇଁ ଆଣି ଦେବି ।"

ଶ୍ୱେତା କାମରେ ଲାଗିଗଲା । ବଗିଚାର ଗୋଟିଏ କୋଣରେ କିଛି ଅଂଶକୁ ଛାଡ଼ି ସେ ସନ୍ଧ୍ୟା ସୁଦ୍ଧା ସବୁଘାସ ସୁନ୍ଦର ଭାବରେ କାଟିଦେଲା ।

ଜଗଦୀଶ ବଗିଚା ଦେଖି କହିଲେ, ''ଶ୍ୱେତା, ବଗିଚାର ସମସ୍ତ ଘାସ କାଟି ନ ଥିବାରୁ ମୁଁ ତୋ ପାଇଁ ଡ୍ରେସ୍ ଆଣିବି ନାହିଁ ।''

ଶ୍ୱେତା ଦୃଢ଼ଭାବରେ କହିଲା, ''ମୋର ଡ୍ରେସ୍ ଦରକାର ନାହିଁ, କିନ୍ତୁ ମୁଁ ସେଠାରୁ ଘାସ କାଟିବି ନାହିଁ ।''

ହଜାରେ କଥା ଅପେକ୍ଷା ଗୋଟିଏ ଭଲ କାର୍ଯ୍ୟ ମନରେ ଗଭୀର ପ୍ରଭାବ ପକାଏ ।

– ହେନ୍‌ରିକ୍ ଇବ୍‌ସନ୍, ନରୱେର ନାଟ୍ୟକାର ଓ କବି

ଗୋଲାପରୁ ପାଖୁଡ଼ାଗୁଡିକ ଛିଣ୍ଡାଇ କେହି ଗୋଲାପର ସୌନ୍ଦର୍ଯ୍ୟ ଅନୁଭବ କରି ନାହାନ୍ତି ।

– ଅଜ୍ଞାତ

ଈଶ୍ୱର ଏକ, ତାଙ୍କର ଅନନ୍ତଭାବ, ଅନନ୍ତ ନାମ । ଯାହାକୁ ଯେଉଁ ଭାବରେ ଓ ଯେଉଁ ନାମରେ ଡାକିବାକୁ ଭଲ ଲାଗେ, ସେ ସେହି ନାମ ଓ ସେହି ଭାବରେ ଡାକିଲେ ଭଗବାନଙ୍କ ସାଙ୍ଗରେ ଦେଖା ହୁଏ ।

– ଶ୍ରୀରାମକୃଷ୍ଣ

ଘାସ ନ କାଟିବାର ରହସ୍ୟ ଜାଣିବା ପାଇଁ ଜଗଦୀଶ ସେହି ଘାସ ଥିବା ଜାଗାଟିକୁ ଦେଖିବାକୁ ଲାଗିଲେ । ସେ ଦେଖିଲେ ଘାସ ଥିବା ସ୍ଥାନର ମଧ୍ୟଭାଗର ଡାହାଣ ପଟେ ଗୋଟିଏ ବ୍ରାହ୍ମଣୀ ବେଙ୍ଗ ବସିଥିଲା । ଝିଅଟିର ହୃଦୟ ଅତି କୋମଳ । ବେଙ୍ଗଟି ଉପରେ ଘାସକଟା ଯନ୍ତ୍ର ମାଡ଼ିଯିବା ଭୟରେ ସେ ଘାସ କାଟି ନ ଥିଲା ।

ବାସ୍ତବରେ, ଯେଉଁଠି ପ୍ରେମ ଥାଏ, ସେଠାରେ ଅସଙ୍ଗତି ଦେଖାଯାଏ । ସମ୍ପୂର୍ଣ୍ଣ ସଙ୍ଗତି ପୃଥିବୀକୁ ଏକ ଶ୍ମଶାନରେ ପରିଣତ କରିବ ।

ବୃଦ୍ଧବ୍ୟକ୍ତି କହୁଥିଲେ, ''ତୁମେ ଅନ୍ୟକୁ ଯାହା ଦେଉଛ, ପ୍ରକୃତରେ ତୁମେ ତାହା ନିଜକୁ ଦେଉଛ ।''

ସେ ଜଣେ କୃଷକ ବିଷୟରେ ଗଳ୍ପଟି ଶୁଣାଇଲେ :

ଜଣେ କୃଷକ ଥିଲେ । ତାଙ୍କର ଗହମ ସବୁବେଳେ ରାଜ୍ୟ କୃଷିମେଳାରେ ପ୍ରଥମ ପୁରସ୍କାର ଲାଭ କରୁଥିଲା । ପଡ଼ୋଶୀ କୃଷକମାନଙ୍କୁ ସେ ଗହମ ବିହନ ବାଣ୍ଟି ଦେଉଥିଲେ । ସେ କାହିଁକି ଏଭଳି ଭଲ ଗହମ ବିହନ ଅନ୍ୟମାନଙ୍କୁ ଦେଉଛନ୍ତି ବୋଲି ଜଣେ ତାଙ୍କୁ ପ୍ରଶ୍ନ କଲେ । ସେ ଉତ୍ତର ଦେଲେ, ''ପବନ ପରାଗ ରେଣୁକୁ ଗୋଟିଏ କ୍ଷେତରୁ ଅନ୍ୟ ଏକ କ୍ଷେତକୁ ଉଡ଼ାଇ ନିଏ । ଯଦି ମୋ ପାଖ ଚାଷୀ ଖରାପ ବିହନ ଲଗାଇବେ, ପରାଗ ସଙ୍ଗମ ଯୋଗୁଁ ମୋ ଫସଲର ମଧ୍ୟ ଗୁଣ ଖରାପ ହୋଇଯିବ । ତେଣୁ ସେମାନେ କିଭଳି ଭଲ ବିହନ ଲଗାଇବେ, ସେଥିପ୍ରତି ମୁଁ ସଚେତନ ଥାଏ ।''

**ଅନ୍ୟମାନଙ୍କ ସହ ସଂପର୍କ ସ୍ଥାପନ କର**

ମୁଁ ବିଶ୍ୱାସକରେ, ପ୍ରତ୍ୟେକ ବ୍ୟକ୍ତିଙ୍କର ଗୋଟିଏ ହୃଦୟ ଅଛି ଏବଂ ଯଦି ତୁମେ ତାକୁ ସ୍ପର୍ଶ କରିପାର, ତେବେ ତୁମେ ଭିନ୍ନ କିଛି କରି ପାରିବ ।

– ଉଲି ଡେରିକ୍‌ସନ୍

କିଛି ଚିନ୍ତାଶୀଳ, ଉତ୍ସର୍ଗୀକୃତ ବ୍ୟକ୍ତି ଏହି ଦୁନିଆକୁ ବଦଳାଇ ଦେଇ ପାରନ୍ତି, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

– ମାର୍ଗାରେଟ୍ ମିଡ୍,ଆମେରିକାର ନୃତତ୍ତ୍ୱବିଦ୍

ବୃଦ୍ଧ ବ୍ୟକ୍ତିଙ୍କ ସ୍ୱର ଜୋରରେ ଶୁଣାଗଲା, ''ହସ୍ତ ପ୍ରସାରଣ କର ଏବଂ ଅନ୍ୟମାନଙ୍କ ସହ ହାତ ମିଳାଅ । ତୁମ ଚତୁଃପାର୍ଶ୍ୱରେ ଥିବା ବ୍ୟକ୍ତିମାନଙ୍କ ସହ ସୁସମ୍ପର୍କ ରକ୍ଷା କରି ରୁହ ।'' ଏବଂ ସେ ଏକ ଭୟାନକ ଯୁଦ୍ଧର ଦୃଶ୍ୟ ବର୍ଣ୍ଣନା କଲେ :

ହତାଶ ଭାବରେ ଅରବିନ୍ଦ କର୍ଣ୍ଣେଲ ସିଂଙ୍କୁ କହିଲେ, ''ସାର୍, ଶ୍ୟାମ ଏ ପର୍ଯ୍ୟନ୍ତ ଯୁଦ୍ଧ କ୍ଷେତ୍ରରୁ ଫେରିନାହିଁ । ମୁଁ ସେଠାକୁ ଯାଇ ତାକୁ ଫେରାଇ ଆଣିବା ପାଇଁ ଆପଣ ମୋତେ ଅନୁମତି ଦିଅନ୍ତୁ ।''

କର୍ଣ୍ଣେଲ ସିଂହ ସିଧା ମନା କରିଦେଇ କହିଲେ, ''ସେଠାକୁ ଯିବା ପାଇଁ ମୁଁ ତୁମକୁ ଅନୁମତି ଦେବି ନାହିଁ । ମୃତ ପ୍ରାୟ ଜଣେ ବ୍ୟକ୍ତି ପାଇଁ ମୁଁ ତୁମ ଜୀବନକୁ ବିପଦରେ ପକାଇ ପାରିବି ନାହିଁ ।''

ଅବଜ୍ଞାକରି ଅରବିନ୍ଦ ଚାଲିଗଲେ । ଏକ ଘଣ୍ଟାପରେ ଗୁଳିମାଡ଼ରେ କ୍ଷତବିକ୍ଷତ ହୋଇ, ତାଙ୍କ ସାଙ୍ଗ ଶ୍ୟାମର ମୃତ ଦେହକୁ ଧରି ସେ ଫେରିଲେ ।

କର୍ଣ୍ଣେଲ ସିଂ ଭୟଙ୍କର ଭାବରେ ରାଗିଗଲେ । ଚିତ୍କାର କରି କହିଲେ, ''ସେ ମୃତ ବୋଲି ମୁଁ କହିଥିଲି । ବର୍ତ୍ତମାନ ମୁଁ ତୁମ ଦୁଇଜଣଙ୍କୁ ହରାଇଲି । ମୋତେ କୁହ, ସେଠାକୁ ଯାଇ ଏକ ମୃତ ଶରୀରକୁ ବୋହି ଆଣିବା କ'ଣ ଠିକ୍ ?''

ଅରବିନ୍ଦ ଧୀର କଣ୍ଠରେ କହିଲେ, ''ସାର୍, ମୁଁ ଯେତେବେଳେ ତା' ପାଖରେ ପହଞ୍ଚିଲି, ସେ ବଞ୍ଚିଥିଲା । ସେ ମୋତେ କହିଲା, ଅରବିନ୍ଦ, ମୁଁ ଜାଣିଥିଲି, ତୁମେ ନିଶ୍ଚୟ ଆସିବ ।''

ବୃଦ୍ଧ ବ୍ୟକ୍ତି କହିଲେ, ''ରାତ୍ର ଭୋଜନ ପାଇଁ ସମୟ ହୋଇ ଯାଇଛି । ମୁଁ ତୁମକୁ ଏହି ଶେଷ ଗପଟି କହିବି ।'' ସେ 'ଦିନ ଓ ରାତି'ର ଗପଟି ପଢ଼ି ଶୁଣାଇଲେ :

ଶିକ୍ଷକ – ରାତ୍ରିର ସମାପ୍ତି ଏବଂ ଦିନର ଆରମ୍ଭ ହେଲା ବୋଲି ତୁମେ କିପରି ଜାଣିବ ?

ରାଜେଶ – ଆପଣ ଯେତେବେଳେ ଦୂରରେ ଥିବା ଗୋଟିଏ ପଶୁକୁ ଦେଖି ତାହା ଘୋଡ଼ା କିମ୍ବା ଗାଈ ବୋଲି କହି ପାରିବେ ।

ଶିକ୍ଷକ – ନା ।

ଇର୍‌ଫାନ୍ – ଆପଣ ଯେତେବେଳେ କିଛି ଦୂରରୁ ଗୋଟିଏ ଗଛକୁ ଦେଖି କହିପାରିବେ ଏହା ଲିମ୍ବ ଗଛ କିମ୍ବା ଆମ୍ବ ଗଛ ।

ଶିକ୍ଷକ – ଏହା ମଧ୍ୟ ଭୁଲ ।

ସବୁଛାତ୍ର – ସାର୍, ତା' ହେଲେ ଆପଣ କୁହନ୍ତୁ ?

ଶିକ୍ଷକ – ତୁମେ ଯେତେବେଳେ କୌଣସି ପୁରୁଷ ବ୍ୟକ୍ତିର ମୁହଁ ଦେଖି ତାଙ୍କ ମଧ୍ୟରେ ତୁମର ଭାଇଙ୍କୁ ଦେଖିପାରିବ, ଯେତେବେଳେ ଜଣେ ନାରୀର ମୁହଁ ଦେଖି ତାଙ୍କ ଭିତରେ ତୁମ ଭଉଣୀଙ୍କୁ ଦେଖିପାରିବ । ଯଦି ଏହା ତୁମେ କରି ପାରିବ ନାହିଁ, ଯେକୌଣସି ସମୟ ହେଲେ ମଧ୍ୟ ଏହା ତୁମ ପାଇଁ ରାତି !

ବାସ୍ତବରେ, ସେହିଦିନ ପିଲାମାନଙ୍କର ସେହି ମହାନ୍ ବୃଦ୍ଧବ୍ୟକ୍ତିଙ୍କ ସହ ଥିଲା ଶେଷ ଦେଖା । କିନ୍ତୁ ସେହି ଗଳ୍ପଗୁଡ଼ିକ ତାଙ୍କର ସ୍ମରଣୀୟ ହୋଇ ରହିଥିଲା ଏବଂ ଅଜଣା ଭାବରେ ସେମାନଙ୍କ ଜୀବନ ଗଢ଼ିବାରେ ସହାୟକ ହୋଇଥିଲା ।

ଆଜି, ସେମାନେ ପ୍ରାପ୍ତ ବୟସ୍କ ନାରୀ ଓ ପୁରୁଷ – କେହି ଡାକ୍ତର, ଇଞ୍ଜିନିୟର, କୃଷକ, ମନ୍ତ୍ରୀ, ବ୍ୟବସାୟୀ, ସରକାରୀ କର୍ମଚାରୀ, ଗୃହକର୍ତ୍ତ୍ରୀ, ଶିକ୍ଷକ ବା ଶିକ୍ଷୟିତ୍ରୀ ଇତ୍ୟାଦି ହୋଇଛନ୍ତି କିନ୍ତୁ ପ୍ରତ୍ୟେକ ଜଣେ ଜଣେ ନିତିନ୍, ଜୟପାଲ, ଶ୍ୱେତାଙ୍କ ପରି... ଏବଂ ଏହିପରି ଭାବରେ ବୃଦ୍ଧଙ୍କ ବାଣୀ ପ୍ରସାରିତ ହେଉଛି ।





ଏକାଗ୍ରତା - ପ୍ରାପ୍ତି ପାଇଁ ସୂତ୍ର
ଶିକ୍ଷା – ପଦ୍ଧତି
ଲିଖନ–ଗ୍ରାଫ୍ ଚାର୍ଟ
Audio-Visual
ସଦ୍‌ଗ୍ରନ୍ଥ ପାଠ
ବିଷୟ–ବସ୍ତୁରେ ନବୀନତା–ବିବିଧତା
ବାତା ବରଣ
କୋଳାହଳ ଶୂନ୍ୟ
ସାତ୍ତ୍ୱିକ ତରଙ୍ଗ
ସ୍ୱାସ୍ଥ୍ୟ
ପୌଷ୍ଟିକ ଆହାର
ବ୍ୟାୟାମ
ସ୍ଥଳ
ଆଲୋକ, ବାୟୁ
ସ୍ୱଚ୍ଛତା
ଆସନ
ଆସବାବ ପତ୍ର
ବ୍ୟବସ୍ଥିତ ବର୍ଗୀ କରଣ
ଆହାର ନିଦ୍ରା
ବୌଦ୍ଧିକ
ଭୌତିକ
ଏ
କା
ଗ୍ର
ତା
ମାନସିକ
ଆଧାତ୍ମିକ
ଶୁଦ୍ଧ ମନ
ମାନସିକ ଆହାର
(ଗାନ୍ଧିଜୀଙ୍କ ତିନି ମାଙ୍କଡ଼)
ଯମ
ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ
ଅପରିଗ୍ରହ, ଅହିଂସା
ନିୟମ
ଶୌଚ, ସନ୍ତୋଷ, ତପ
ସ୍ୱାଧ୍ୟାୟ, ଈଶ୍ୱର ପ୍ରଣିଧାନ
ନିୟମିତତା
ସମୟ ସାରଣୀ, ଦିନଚର୍ଯ୍ୟା
ଅନାସକ୍ତି
ଫଳ ପାଇଁ ଅନାସକ୍ତି
ଆତ୍ମ–ଶ୍ରଦ୍ଧା
ଧ୍ୟେୟ–ନିଷ୍ଠା
ଧ୍ୟାନ
ପ୍ରାର୍ଥନା–ଭଜନ
ମନ୍ତ୍ର–ଜପ
ସତ୍‌ସଙ୍ଗ

# ସ୍ୱାମୀ ବିବେକାନନ୍ଦଙ୍କ ପ୍ରେରଣାରେ ଗୋପବନ୍ଧୁ



ସ୍ୱାମୀ ବିବେକାନନ୍ଦଙ୍କର ବାଣୀ "The Poor, the ignorant and the downtrodden, but these be your God". ଅର୍ଥାତ୍ - ଦରିଦ୍ର, ଅଶିକ୍ଷିତ ଓ ପତିତ ତୁମର ଦେବତା ହୁଅନ୍ତୁ ନୀତିକୁ ଉତ୍କଳମଣି ଗୋପବନ୍ଧୁ ଅନୁସରଣ କରିଥିଲେ ।

ଗୋପବନ୍ଧୁ ଏହି ମହାନୀତିକୁ ଆଶ୍ରୟ କରି ଦରିଦ୍ର ନାରାୟଣଙ୍କ ଉଦ୍ଧାର ଚିନ୍ତାରେ ବ୍ୟସ୍ତ ରହୁଥିଲେ ।[1]

ଗୋପବନ୍ଧୁ ଭୋରରୁ ଉଠି ସ୍ନାନସାରି, ଭାଗବତ ପାଠ କରୁଥିଲେ । ଖାଇବା ଶୋଇବାରେ ତାଙ୍କର ଆଡ଼ମ୍ବର ନଥିଲା । ନିର୍ମଳ ଓ ସଫାସୁତୁରା ପ୍ରତି ତାଙ୍କର ବିଶେଷ ଧ୍ୟାନ ଥିଲା । ରନ୍ଧାରେ କି ଅନ୍ୟାନ୍ୟ ବାବଦରେ ଅପବ୍ୟୟର ସେ ବିରୋଧୀ ଥିଲେ । ଯେତେ ସରଳରେ ଓ ଅଳ୍ପ ଖର୍ଚ୍ଚରେ ଚଳିବା ସେତେ ଭଲ ବୋଲି ସେ ଉପଦେଶ ଦେଉଥିଲେ ।

ତାଙ୍କର ପାନ ବଟୁଆଟିଏ ଥାଏ । ସେଥିରେ ସେ ପଇସା ଓ କଉଡି ରଖୁଥିଲେ । ପାନବଟୁଆ ପଇସାମୁଣି ପରି ବ୍ୟବହୃତ ହେଉଥିଲା । ବଟୁଆରେ ପାନ ରହୁ ନ ଥିଲା କାରଣ ସେ ପାନ ଖାଉ ନ ଥିଲେ । ଚଟେଇ ପକେଇ ବସୁଥିଲେ । ଆଗରେ ପେଡିଟିଏ କି ସୁଟକେଶ୍‌ଟିଏ ଥାଏ । ତା ଉପରେ ବଟୁଆଟିକୁ ରଖି ଦିଅନ୍ତି । ବଟୁଆରୁ ପଇସା କାଢି ବାହାରେ ରଖନ୍ତି । ତାଙ୍କୁ ଭଲଭାବରେ ଜାଣି ନ ଥିବା ଲୋକେ ତାଙ୍କର ଏ ବଟୁଆ, ଏ ଚଳିବା ଢଙ୍ଗ, ଖାଦ୍ୟର ଆକାର ପ୍ରକାର ଦେଖି କୌତୁକରେ କହୁଥିଲେ, ''କଞ୍ଜୁସ୍ ବୁଢ଼ାଟିଏ ।'' କିନ୍ତୁ ଏ ବଟୁଆ ପରର ଦୁଃଖ, ଅଭାବ ମୋଚନ ପାଇଁ ସବୁବେଳେ ଖୋଲାଥାଏ, କେବଳ ଅପବ୍ୟୟର ଦ୍ୱାର ରୁଦ୍ଧ ହୋଇଥାଏ ।

୧୯୦୭ ମସିହାରେ ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣରେଖା ଏସବୁ ନଦୀରେ ଏକାସମୟରେ ବନ୍ୟା ହୋଇଗଲା । ସେ ସମୟର ବିଲାତର ସାମ୍ବାଦିକ ନେଭିନ୍‌ସନ୍ ଭାରତ ଭ୍ରମଣରେ ଆସିଥିଲେ । ଓଡ଼ିଶାର ବନ୍ୟା ଅଞ୍ଚଳ ଦେଖିବା ପାଇଁ ସେ କଟକରେ ପହଞ୍ଚିଲେ । ଜାଉଁଳିଆପଟିରେ ଶ୍ରୀ ବ୍ରଜସୁନ୍ଦର ଦାସଙ୍କ ପୁରୁଣା ମୁକୁର ପ୍ରେସ କୋଠାରେ ଏକ ସଭା ହୋଇଥିଲା । ମଧୁବାବୁ ଓ ଗୋପବନ୍ଧୁ ବାବୁ ବକ୍ତୃତା ଦେଉଥିଲେ । ଗୋପବନ୍ଧୁ କେବଳ କାନ୍ଦିଲେ, ବିଶେଷ କିଛି କହିପାରିଲେ ନାହିଁ । କିନ୍ତୁ ଏହାର ପ୍ରଭାବ ଯଥେଷ୍ଟ ହେଲା । ଦୁଃଖୀର ଦୁଃଖ ତାଙ୍କୁ ଆତ୍ମହରା କରି ଦେଉଥିଲା, ତାଙ୍କ ହୃଦୟରେ ତୁହାକୁ ତୁହା କୋହ ଉଠୁଥିଲା ଏବଂ ସେ କାନ୍ଦୁଥିଲେ । ଶ୍ରୀ ଗୋଦାବରୀଶ ମିଶ୍ର ପ୍ରଭୃତି କଲେଜ ଛାତ୍ରମାନେ ସେ ସଭାରେ ବହୁ ସଂଖ୍ୟାରେ ଉପସ୍ଥିତ ଥିଲେ ।



ଗୋପବନ୍ଧୁଙ୍କର ପ୍ରଗାଢ ଆତ୍ମବିଶ୍ୱାସ ଓ ଅଲୌକିକ ଆତ୍ମତ୍ୟାଗ ହିଁ ତାଙ୍କ ମୁଖରେ ଉପଯୁକ୍ତ ଭାଷା ଫୁଟାଇଥିଲା । ଓଡିଆ ସାହିତ୍ୟ କାହିଁକି, ଭାରତୀୟ ସାହିତ୍ୟରେ ସ୍ୱାଧୀନତା ପାଇଁ ଦେଶ ଓ ଜାତି ପାଇଁ ଏପରି ମର୍ମସ୍ପର୍ଶୀ ଭାଷାରେ ଲେଖା ହୋଇଥିବା କ୍ୱଚିତ୍ ଦେଖାଯାଏ । ସେହି ବିରଳ ପଙ୍କ୍ତି ଗୋପବନ୍ଧୁଙ୍କ ଲେଖନୀରୁ ନିମ୍ନମତେ ନିଃସୃତ ହୋଇଅଛି :-

"ମିଶୁ ମୋର ଦେହ ଏ ଦେଶ ମାଟିରେ<br>
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।<br>
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ<br>
ପୂରୁ ତହିଁ ପଡି ମୋର ମାଂସ ହାଡ ।<br>
ସ୍ୱାଧୀନତା – ପଥେ ତିଳେ ହେଲେ ନର<br>
ମୋ ଜୀବନ ଦାନେ ହେଉ ଅଗ୍ରସର ।"

Ref [1] ଗୋପବନ୍ଧୁ ରଚନାବଳୀ
ଗୋପବନ୍ଧୁଙ୍କ ଗଦ୍ୟ ସାହିତ୍ୟ (ଉପକ୍ରମଣିକା)
ଡା. ସତ୍ୟନାରାୟଣ ରାଜଗୁରୁ, ପୃଷ୍ଠା–୪୯

## ଆକବର ଓ ବୀରବଲ

ସମ୍ରାଟ ଆକବରଙ୍କର ଅତି ପ୍ରିୟ ହୋଇଥିବାରୁ ମନ୍ତ୍ରୀ ବୀରବଲ, ରାଜାଙ୍କର ଅଧିକାଂଶ ସମସ୍ୟାର ସମାଧାନ କରିଦେଉଥିଲେ । ଦିନେ ସକାଳେ ରାଜା ଆକବର ଓ ମନ୍ତ୍ରୀ ବୀରବଲ ବଗିଚାରେ ବୁଲୁଥିଲେ । ସେହିଦିନ ସକାଳେ ବଗିଚାରେ ବହୁତ କାଉ ରାବ କରୁଥିଲେ । କାଉମାନଙ୍କୁ ଦେଖି ଦେଖି ରାଜାଙ୍କ ମନରେ ଗୋଟିଏ ପ୍ରଶ୍ନ ଆସିଲା । ସେ ଆଶ୍ଚର୍ଯ୍ୟ ହୋଇ ଭାବିଲେ, ରାଜ୍ୟର କାଉ ସଂଖ୍ୟା କେତେ ହେବ ?

ଯେହେତୁ ବୀରବଲ ରାଜାଙ୍କ ସାଙ୍ଗରେ ଥିଲେ, ତେଣୁ ଆକବର ତୁରନ୍ତ ପ୍ରଶ୍ନ କଲେ, "ବୀରବଲ କୁହ, ଆମ ରାଜ୍ୟର କାଉ ସଂଖ୍ୟା କେତେ ?" ବୀରବଲ କାଉମାନଙ୍କୁ ଦେଖିଲେ ଏବଂ ଟିକିଏ ଚିନ୍ତାକରି କହିଲେ, "ପଞ୍ଚାନବେ ହଜାର ଚାରିଶହ ଚଉଷଠିଟି କାଉ ଆମ ରାଜ୍ୟରେ ଅଛନ୍ତି ।"

ତାଙ୍କର ଉତ୍ତର ଶୁଣି ଆଶ୍ଚର୍ଯ୍ୟ ହୋଇ ଆକବର ପରୀକ୍ଷା କରିବା ପାଇଁ ବୀରବଲଙ୍କୁ ପଚାରିଲେ, "ତୁମେ ଉତ୍ତର ଦେଇଥିବା କାଉ ସଂଖ୍ୟାଠାରୁ ଯଦି ବେଶୀ ବା କମ୍ କାଉ ଥାଆନ୍ତି ତାହା ହେଲେ କ'ଣ ହେବ ?" ବୀରବଲ ଉତ୍ତର ଦେଲେ, "ମୋର ଉତ୍ତର ଠାରୁ ଯଦି ବେଶି କାଉ ଥାଆନ୍ତି ତାହାହେଲେ ସେମାନେ ଆମ ପଡ଼ୋଶୀ ରାଜ୍ୟର । ଯଦି କମ୍ କାଉ ଥାଆନ୍ତି ତାହାହେଲେ କିଛି କାଉ ଛୁଟି କଟାଇବା ପାଇଁ ପଡ଼ୋଶୀ ରାଜ୍ୟକୁ ଯାଇଛନ୍ତି ।"

অধ্যায় – ৪

# ମୋ ଭାରତ – ଶାଶ୍ୱତ ଭାରତ

କର୍କଶ ଶବ୍ଦ କରି ଗୋଟିଏ କାର୍ ସ୍କୁଲ ସମ୍ମୁଖରେ ଆସି ଅଟକିଲା । ଜଣେ ବ୍ୟକ୍ତି କାର୍ ଭିତରୁ ବାକ୍ସଟି ଧରି ପ୍ରଧାନ ଶିକ୍ଷକଙ୍କ କାର୍ଯ୍ୟାଳୟକୁ ଗଲେ ଏବଂ କହିଲେ, ''ସାର୍, ମୁଁ ଏହି ବିଦ୍ୟାଳୟର ଜଣେ ପୂର୍ବତନ ଛାତ୍ର, ଏବଂ ବିଦ୍ୟାଳୟ ପାଇଁ ମୋର ଏହା ଗୋଟିଏ ଛୋଟ ଉପହାର । ସାରା ଭାରତରେ ଥିବା ମୋ ବନ୍ଧୁ ମାନଙ୍କଠାରୁ ମୁଁ କେତେ ଗୁଡ଼ିଏ ଉପାଦେୟ ପୁସ୍ତକ ସଂଗ୍ରହ କରିଛି ଏବଂ ବିଦ୍ୟାଳୟ ପାଠାଗାରକୁ ସେଗୁଡ଼ିକ ଦାନ କରୁଛି । ଦୟାକରି ସେଗୁଡ଼ିକ ଗ୍ରହଣ କରନ୍ତୁ ।'' ପ୍ରଧାନ ଶିକ୍ଷକ ତାଙ୍କ ଚୌକିରୁ ଉଠି କିଛି କହିବା ପୂର୍ବରୁ ଭଦ୍ରବ୍ୟକ୍ତି ତାଙ୍କ କାର୍ ପାଖକୁ ତର ତର ହୋଇ ଗଲେ ଏବଂ କାର୍ ଚଳାଇ ଦ୍ରୁତ ବେଗରେ ଚାଲିଗଲେ ।

ବିଦ୍ୟାଳୟଟି ଅରୁଣାଚଳ ପ୍ରଦେଶର ଆଲଙ୍ଗ ସହର ନିକଟରେ ଥିବା ଘଞ୍ଚ ଜଙ୍ଗଲ ଓ ପର୍ବତ ଘେର ମଧ୍ୟରେ ଅବସ୍ଥିତ । ପ୍ରଧାନ ଶିକ୍ଷକ ନୂଆ, ସେ ମାତ୍ର ୧୫ଦିନ ପୂର୍ବରୁ ଆସିଥିଲେ । ତେଣୁ ଏହି ଭଦ୍ରବ୍ୟକ୍ତି କିଏ ଏବଂ କେଉଁ ଠାରୁ ଆସିଛନ୍ତି, ତାଙ୍କ ପକ୍ଷରେ ଜାଣିବା ସମ୍ଭବ ନ ଥିଲା । ପ୍ରଧାନ ଶିକ୍ଷକ ବାକ୍ସଟିକୁ ଖୋଲିଲେ ଏବଂ ବହିଗୁଡ଼ିକୁ ବାହାର କଲେ । ସେଥିରେ ସାମୁଏଲ୍ ସ୍ମାଇଲ୍‌ଙ୍କର 'ସେଲ୍ଫ୍ ହେଲ୍ପ୍', ପଣ୍ଡିତ ଜବାହାରଲାଲ ନେହେରୁଙ୍କର 'ଲେଟର୍ସ୍ ଫ୍ରମ୍ ଏ ଫାଦର ଟୁ ହିଜ୍ ଡଟର୍', ମହାତ୍ମାଗାନ୍ଧୀଙ୍କର 'ମାଇଁ ଏକ୍ସପେରିମେଣ୍ଟ ଉଇଥ୍ ଟ୍ରୁଥ୍', ଗୋଟିଏ ପୁରୁଣା ଡାଏରୀ, ଡାନ୍ ବ୍ରାଉନ୍‌ଙ୍କ ଉପନ୍ୟାସ, କେଲ୍‌ଭିନ୍ ଓ ହବସ୍‌ଙ୍କ କାର୍ଟୁନ ଡାଇଜେଷ୍ଟ ଏବଂ ଅନ୍ୟ କିଛି ପୁସ୍ତକ ଥିଲା । ଡାଏରୀଟି ତାଙ୍କର ଦୃଷ୍ଟି ଆକର୍ଷଣ କଲା ।



ସେ ଏହାକୁ ଖୋଲିଲେ । ଏହା ଏକ ବ୍ୟକ୍ତିଗତ ଡାଏରୀ । ସେ ପୃଷ୍ଠାଗୁଡ଼ିକ ଗୋଟିକ ପରେ ଗୋଟିଏ ଦେଖିଲେ କିନ୍ତୁ ଲେଖକଙ୍କ ନାମ ପାଇଲେ ନାହିଁ । ପ୍ରଧାନ ଶିକ୍ଷକ ଆଶ୍ଚର୍ଯ୍ୟ ହେଲେ ଯେ, ତାଙ୍କୁ ଭଦ୍ରବ୍ୟକ୍ତି କାହିଁକି

ପୁସ୍ତକ ସହିତ ଡାଏରୀଟି ଦେଲେ । ସେ ଡାଏରୀଟି ପଢ଼ିବାକୁ ଆରମ୍ଭ କଲେ । ଅନେକ ସ୍ଥାନରେ ଲେଖା ନ ଥିଲା । କେତେକ ସ୍ଥାନରେ ଅକ୍ଷର ଚିହ୍ନି ହେଉ ନ ଥିଲା । କିନ୍ତୁ ଡାଏରୀର ଯେଉଁ ଅଂଶ ପଢ଼ିହେଉଥିଲା ତାହା ଥିଲା ଅସାଧାରଣ । ଡାଏରୀ ଲେଖକ, ସ୍କୁଲରେ ପଢ଼ିଲା ଦିନଠାରୁ ତାଙ୍କ ସମଗ୍ର ଜୀବନର ଘଟଣାଗୁଡ଼ିକୁ ସେଥିରେ ଲିପିବଦ୍ଧ କରିଥିଲେ । ପ୍ରତ୍ୟେକ ଶ୍ରେଣୀରେ ଏହି ଡାଏରୀଟିକୁ ପଢ଼ି ଶୁଣାଇବା ପାଇଁ ଶ୍ରେଣୀ ଶିକ୍ଷକମାନଙ୍କୁ ପ୍ରଧାନ ଶିକ୍ଷକ ନିର୍ଦ୍ଦେଶ ଦେଲେ ।

ଡାଏରୀରେ ଲେଖାଗୁଡ଼ିକ ନିମ୍ନ ପ୍ରକାରର ଥିଲା :

**୧୦ ଅଗଷ୍ଟ ୧୯୭୬**

ଆଜି ଆମ ଶ୍ରେଣୀ ଶିକ୍ଷକ ମହାନ୍ ସ୍ୱାଧୀନତା ସଂଗ୍ରାମ ଉପରେ ତାଙ୍କର ଆଲୋଚନା ଶେଷ କଲେ । କି ଚମତ୍କାର ସଂଗ୍ରାମ ! କେତେ ଲୋକଙ୍କର ଆତ୍ମତ୍ୟାଗ ! ମୁଁ ସେମାନଙ୍କ ମଧ୍ୟରୁ ଜଣେ ହୋଇଥାନ୍ତି କି ! ଭାରତମାତା ପାଇଁ ରକ୍ତ ଦେବା ପାଇଁ ମୁଁ ମଧ୍ୟ ପ୍ରସ୍ତୁତ ।

**୨୨ ଅଗଷ୍ଟ ୧୯୭୬**

ଆଶ୍ଚର୍ଯ୍ୟ ଲାଗେ ଧର୍ମ ଏବଂ ଭାରତ କାହିଁକି ଅଙ୍ଗାଙ୍ଗି ଭାବେ ଜଡ଼ିତ । ସାରା ପୃଥିବୀରେ ମୁଁ ଏପରି ଏକ ଦେଶ ଦେଖିବାକୁ ପାଉ ନାହିଁ ଯେଉଁ ଦେଶ ଧର୍ମସହ ଘନିଷ୍ଠ ଭାବେ ଜଡ଼ିତ ଅଛି ।

ମହାତ୍ମାଗାନ୍ଧୀଙ୍କର ଅହିଂସା ଓ ଅସହଯୋଗ ଆନ୍ଦୋଳନ ଭାରତର ସ୍ୱାଧୀନତା ଲାଭ ପାଇଁ ଏକ ମହାନ୍ ଅବଦାନ ।

**୧ ସେପ୍ଟେମ୍ବର ୧୯୭୬**

ନୋଟିସ୍ ବୋର୍ଡ଼ରୁ ଏହି ଉକ୍ତିଟିକୁ ଲେଖିଲି : ଦେଶର ଗୌରବ ପାଇଁ ଜୀବନ ଦାନ ହେଉଛି ମହାନ୍ ଦେଶ ପ୍ରେମ । ଦେଶ ପାଇଁ ବଞ୍ଚିବା ଓ ମାତୃଭୂମି ପାଇଁ କଠିନ ପରିଶ୍ରମ କରିବା ସମଭାବରେ ଦେଶ ପ୍ରେମର ପରିଚୟ ପ୍ରଦାନ କରିଥାଏ । ଏହା ଅତି ମହାନ୍ । ମୁଁ ଏହା କରିବି ।

**୫ ସେପ୍ଟେମ୍ବର ୧୯୭୬**

ମୋର ଦେଶପ୍ରେମ କାହିଁକି ମାତୃଭୂମି ପାଇଁ କିଛି

### ଗାନ୍ଧିଜୀ ଜଣେ ଯଥାର୍ଥ ସମ୍ମାନନୀୟ ବ୍ୟକ୍ତି

ଭାରତର ଶେଷ ଇଂରେଜ ରାଜ ପ୍ରତିନିଧି ଲର୍ଡ଼ ମାଉଣ୍ଟବ୍ୟାଟେନ୍ ଯେତେବେଳେ ଘୋଷଣା କଲେ ଯେ ତାଙ୍କ ପୁତୁରା ରାଜକୁମାର ଫିଲିପ୍ ରାଜକୁମାରୀ ଏଲିଜାବେଥ୍‌ଙ୍କ ସହିତ ବିବାହ ବନ୍ଧନରେ ଆବଦ୍ଧ ହେବାକୁ ଯାଉଛନ୍ତି, ମହାତ୍ମା ଗାନ୍ଧୀ ତାଙ୍କୁ କହିଲେ, "ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ଆପଣଙ୍କ ପୁତୁରା ଭବିଷ୍ୟତର ରାଣୀଙ୍କୁ ବିବାହ କରିବାକୁ ଯାଉଛନ୍ତି । କିନ୍ତୁ ମୁଁ ସେମାନଙ୍କୁ କ'ଣ ଉପହାର ଦେଇ ପାରିବି ? ମୋ ପାଖରେ କିଛି ନାହିଁ ।"

ଲର୍ଡ଼ ମାଉଣ୍ଟବ୍ୟାଟେନ୍ କହିଲେ, "ଆପଣଙ୍କ ପାଖରେ ସୁତା କଟା ଅରଟ ଅଛି, ତେଣୁ ଆପଣ ସୁତାକାଟି ତାଙ୍କ ପାଇଁ କିଛି ବୁଣିଦିଅନ୍ତୁ ।"

ଗାନ୍ଧିଜୀ ଗୋଟିଏ ଟେବୁଲ କ୍ଲଥ ବୁଣି ମାଉଣ୍ଟବ୍ୟାଟେନ୍‌କୁ ଦେଲେ । ମାଉଣ୍ଟବ୍ୟାଟେନ୍ କିଛି ଲେଖା ସହ ଏହି ଟେବୁଲ କ୍ଲଥଟିକୁ ରାଜକୁମାରୀ ଏଲିଜାବେଥ୍‌ଙ୍କ ନିକଟକୁ ପଠାଇଲେ ।

ମାଉଣ୍ଟବ୍ୟାଟେନ୍ ଲେଖିଥିଲେ, "ଏହାକୁ ମଣିମୁକ୍ତା ଖଚିତ ରାଜମୁକୁଟ ରହୁଥିବା ସ୍ଥାନରେ ଯତ୍ନର ସହ ରଖିବ । କାରଣ, ଏହା ଯେଉଁ ବ୍ୟକ୍ତିଙ୍କ ଦ୍ୱାରା ବୁଣା ଯାଇଛି, ସେ କହିଛନ୍ତି, ଇଂରେଜମାନେ ଆମ ବନ୍ଧୁ ଭଳି ଆମ ଦେଶ ତ୍ୟାଗ କରନ୍ତୁ ।"

କରିବାକୁ ସୁଯୋଗ ଦେଉନାହିଁ ? ସମ୍ଭବତଃ ମୋତେ ରାଜନୀତିରେ ପ୍ରବେଶ କରିବାକୁ ପଡ଼ିବ । ମୁଁ ଯଦି ଜଣେ ମନ୍ତ୍ରୀ ହୁଏ, ମାତୃଭୂମି ପାଇଁ କିଛି କରି ପାରିବି । କିମ୍ବା ମୋର ଭାରତୀୟ ପ୍ରଶାସନିକ ସେବାରେ ପ୍ରବେଶ କରିବା ଉଚିତ କି ? କିମ୍ବା ଗ୍ରାମରେ ରହି ଗ୍ରାମଟିକୁ ଗୋଟିଏ ଆଦର୍ଶ ଗ୍ରାମରେ ପରିଣତ କରିବି କି ? ମୁଁ ମଧ୍ୟ ମୋ ଦେଶ ପାଇଁ କିଛି କରିବା ଉଚିତ ।

**୧୨ ମେ ୧୯୮୦**

ଦଶମ ଶ୍ରେଣୀ ବୋର୍ଡ଼ ପରୀକ୍ଷାରେ ଷୋଡ଼ଶ ସ୍ଥାନ ଅଧିକାର କରିଥିବାରୁ ମୋର ବାପା ଓ ମା ଖୁବ୍ ଆନନ୍ଦିତ । ଶିକ୍ଷକମାନେ ମଧ୍ୟ ଖୁବ୍ ଖୁସି । ସାଙ୍ଗମାନେ ଭୋଜି ପାଇଁ କହିଲେ । ମା କହିଲେ ସଂଗୀତାର ସ୍କୁଲ ଖୋଲିଲେ ଭୋଜି କରିବା ।

**୧୬ ମାର୍ଚ୍ଚ ୧୯୮୧**

ମୋ ମନରେ ଏକ ଆନ୍ଦୋଳନ ସୃଷ୍ଟି ହେଲା । ସ୍ୱାମୀ ବିବେକାନନ୍ଦଙ୍କର 'ଲେକ୍‌ଚର୍ସ୍ ଫ୍ରମ୍ କଲମ୍ବୋ ଟୁ ଆଲମୋରା' ବହିଟି ପାଇଲି । କି ପ୍ରକାର ଚିନ୍ତାଧାରା ! ଜଣେ ସାଧାରଣ ଲୋକ କ'ଣ ଏପରି ଚିନ୍ତା କରି ପାରିବ ? ଧନ୍ୟ ଈଶ୍ୱର !

**୨୦ ମାର୍ଚ୍ଚ ୧୯୮୧**

ସ୍ୱାମୀଜୀ କହିଛନ୍ତି, ବ୍ରହ୍ମଚର୍ଯ୍ୟ ହେଉଛି ଗୋଟିଏ ଦେଶର ଜୀବନ । ଆଶ୍ଚର୍ଯ୍ୟ ପର୍ଯ୍ୟବେକ୍ଷଣ ।

**୯ ଅକ୍ଟୋବର, ୧୯୮୨**

ସ୍ୱାମୀଜୀଙ୍କ ଲିଖିତ ଆଉ ଏକ ଚମକପ୍ରଦ ବହି, 'ପ୍ରାକ୍ଟିକାଲ ବେଦାନ୍ତ', ପଢ଼ିଲି । ଏହି ବହିଟିକୁ ମୋ ସାଙ୍ଗ କୁମାର ମୋତେ ଉପହାର ଦେଇଥିଲା ।

**୪ ଏପ୍ରିଲ, ୧୯୮୩**

ସ୍ୱାମୀଜୀଙ୍କ ବକ୍ତୃତା ପାଞ୍ଚଥର ପଢ଼ି ଶେଷକଲି । ମୋର ହୃଦ୍‌ବୋଧ ହେଲା, ମୁଁ ମଧ୍ୟ କିଛି କରିପାରିବି । ଭାରତର ଉନ୍ନତି ସାଧନ ପାଇଁ ମୁଁ ବିରାଟ କିଛି ହେବାକୁ ଚାହେଁ ନାହିଁ । ମୁଁ ଯେଉଁଠି ଅଛି ସେଇଠି ମଧ୍ୟ ଭାରତ ପାଇଁ କିଛି ମହତ୍ୱପୂର୍ଣ୍ଣ କାର୍ଯ୍ୟ କରିପାରିବି । ସ୍ୱାମୀଜୀ କହିଛନ୍ତି, ବେଦାନ୍ତର ଏହି ସବୁ ଧାରଣା ଜଣେ ଛାତ୍ରକୁ ଜଣେ ଭଲ ଛାତ୍ର, ଜଣେ ଗୃହିଣୀକୁ ଭଲ ଗୃହିଣୀରେ ପରିଣତ କରିପାରିବ । କି ଅସାଧାରଣ ଭାବନା ! ମୋ ମା ମଧ୍ୟ ଏହି କଥାଗୁଡ଼ିକୁ ଖୁବ୍ ପ୍ରଶଂସା କରନ୍ତି ।

**୧୫ ଏପ୍ରିଲ, ୧୯୮୩**

ବେଦାନ୍ତର ଏହି ଧାରଣା-ଗୁଡ଼ିକ ଜଣେ ଛାତ୍ରକୁ ଉତ୍ତମ ଛାତ୍ରରେ ପରିଣତ କରିବ ।

### ତୁମର ପଡ଼ୋଶୀକୁ ନିଜ ପରି ଭଲପାଅ

ଡାୟୋଜିନ୍‌ସ ଦିନେ ରାସ୍ତାର ଗୋଟିଏ କୋଣରେ ଠିଆ ହୋଇ ପାଗଳ ଭଳି ହସୁଥିଲେ । ଜଣେ ପଥିକ ପଚାରିଲେ, "ତୁମେ କାହିଁକି ହସୁଛ ?" "ରାସ୍ତା ମଝିରେ ପଡ଼ିଥିବା ଏକ ପଥରକୁ ତୁମେ ଦେଖୁଛ ? ସକାଳ ଠାରୁ ମୁଁ ଏଠାରେ ଠିଆ ହୋଇ ଦେଖୁଛି, ଦଶ ଜଣ ଲୋକ ଏହାକୁ ଝୁଣ୍ଟି ଏଠାରେ ପଡ଼ିଛନ୍ତି ଏବଂ ଗାଳି ଦେଇ ଚାଲିଯାଉଛନ୍ତି । କିନ୍ତୁ କେହି ଜଣେ ଏହି ପଥରଟିକୁ ଉଠାଇ ଫୋପାଡ଼ି ଦେବା ପାଇଁ ଚେଷ୍ଟା କରିନାହାଁନ୍ତି । କାହିଁକି ନା ପଥରଟି ଉଠିଗଲେ ଅନ୍ୟମାନେ ଝୁଣ୍ଟି ପଡ଼ିବେ ନାହିଁ ।"

ସ୍ୱାମୀଜୀ କହିଥିବା ଏହି ଉକ୍ତିର ଅର୍ଥ କ'ଣ ?

୨୩ ଜାନୁଆରୀ ୧୯୮୪

ମୁଁ ଅନୁମାନ କରୁଛି ସ୍ୱାମୀଜୀଙ୍କର ଭାବନାଗୁଡ଼ିକ ଧୀରେ ଧୀରେ ମୋ ନିଜର ହୋଇଯାଉଛି । ମୁଁ ଅନେକ ଦିନରୁ ଚିନ୍ତା କରୁଥିଲି ଜଣେ ଛାତ୍ର ଭାବରେ ଭାରତରୁ ଦୁର୍ନୀତି ଦୂର କରିବାରେ କିପରି ସାହାଯ୍ୟ କରିପାରିବି ଏବଂ ଏହି ଧାରଣା ମୋ ମନ ଭିତରେ ଝଲସୁ ଥିଲା ।

**କର୍ତ୍ତବ୍ୟ**

କୌଣସି କର୍ତ୍ତବ୍ୟ ଅସୁନ୍ଦର ନୁହେଁ, କୌଣସି କର୍ତ୍ତବ୍ୟ ଅପବିତ୍ର ନୁହେଁ । ପ୍ରତ୍ୟେକ କର୍ତ୍ତବ୍ୟ ପବିତ୍ର ଏବଂ କର୍ତ୍ତବ୍ୟପରାୟଣତା ହେଉଛି ଭଗବାନଙ୍କ ପ୍ରତି ସର୍ବୋତ୍କୃଷ୍ଟ ପୂଜା ।

ସ୍ୱାମୀ ବିବେକାନନ୍ଦ

ମୋ ବାପା ଜଣେ ସରକାରୀ ଅଧିକାରୀ । ହରିଶ, ସଂଗୀତା, ମା ଓ ମୋର ଭରଣପୋଷଣ ପାଇଁ ସେ ଯଥେଷ୍ଟ ରୋଜଗାର କରନ୍ତି । ମୁଁ ଦେଖିଲି ଗୁରୁନାଥ ଦାମୀ କମ୍ପାନୀର ଗୋଟିଏ ପ୍ୟାଣ୍ଟ କିଣିଲା । ଯାହାର ମୂଲ୍ୟ ୩୫୦୦ ଟଙ୍କା । ମୁଁ ମଧ୍ୟ ଗୋଟିଏ କିଣିବା ପାଇଁ ଚାହୁଁଥିଲି । କିନ୍ତୁ ଗୁରୁନାଥର ବାପା ଜଣେ ଶିଳ୍ପପତି । ସେ ଏହା ଦେଇପାରିବେ । କିନ୍ତୁ ମୋ ବାପା ଦେବା ପାଇଁ ସମର୍ଥ ହେବେ ନାହିଁ । ଯଦି ମୁଁ ବାଧ୍ୟ କରିବି ସେ ଦେଇ ପାରନ୍ତି । କିନ୍ତୁ ଏହା ଦ୍ୱାରା ବାପା ତାଙ୍କ ସାଧୁତାକୁ ଜଳାଞ୍ଜଳି ଦେଇ କିଛି ରୋଜଗାର ବଢ଼ାଇବା ପାଇଁ ଚେଷ୍ଟା କରିବାର ସମ୍ଭାବନା ଅଛି । ଏହିପରି ଭାବରେ ଦୁର୍ନୀତି ଆରମ୍ଭ ହୁଏ । ତେଣୁ ବାପା ଦୁର୍ନୀତି କରିବା ପାଇଁ ବାଧ୍ୟ ହେବେ । ଯଦି ମୁଁ ମୋ ଇଚ୍ଛାକୁ ନିୟନ୍ତ୍ରଣରେ ରଖିପାରିବି (ଯାହା ମୁଁ ନିଶ୍ଚିତ ପାରିବି) ବାପା ତାଙ୍କ ସାଧୁତାକୁ ଜଳାଞ୍ଜଳି ଦେବେନାହିଁ । ଏହିପରି ଏକ ଛୋଟିଆ ଉପାୟରେ ମୁଁ ସିଧା ସଳଖ, ଦୁର୍ନୀତି ରୋକିବାରେ ସହାୟକ ହୋଇ ପାରିବି ।

୨୮ ଫେବୃଆରୀ ୧୯୮୪

ସ୍ୱାମୀଜୀଙ୍କ ବିଷୟରେ ଜଣେ ଲେଖିଛନ୍ତି : ସେହି ଦିନରୁ ଆମର ଭାରତ ପ୍ରତି ପ୍ରେମ ଜାଗ୍ରତ ହେଲା ଯେଉଁ ଦିନ ସ୍ୱାମୀଜୀଙ୍କ ଠାରୁ ଭାରତ ଶବ୍ଦଟି ଶୁଣିଲୁ । ଏହି ତିନି ଅକ୍ଷର ବିଶିଷ୍ଟ ଶବ୍ଦରେ ଏତେ ଭାବ ପ୍ରକାଶିତ ହୋଇପାରିବ ଏହା ଆମେ ଜାଣି ନ ଥିଲୁ ।

୧୪ ମଇ ୧୯୮୪

ମୁଁ ଯେତେବେଳେ ଗଣେଶ ସହିତ ଆମ ଦେଶର କିପରି ଉନ୍ନତି ହୋଇ ପାରିବ ସେହି ବିଷୟରେ ଯୁକ୍ତି କରୁଥିଲି, ନିମ୍ନଲିଖିତ ଧାରଣାଗୁଡ଼ିକ ମୋ ମନକୁ ଆସିଲା :

ମୋ ପରି କୋଟି କୋଟି ଲୋକଙ୍କୁ ନେଇ ଏ ଦେଶ ଗଠିତ । ଏହାର ଅର୍ଥ, ଯଦି ଗୋଟିଏ ଦେଶର ଲୋକମାନେ ଭଲ, ସମଗ୍ର ଦେଶଟି ଭଲ । ଏହାର ଅର୍ଥ, ଯଦି ମୁଁ ନିଜେ ଭଲ, ସାରା ଦେଶଟି ଭଲ ହେବ । ଯଦି ମୋ କାର୍ଯ୍ୟ ମୁଁ ଠିକ୍ ଭାବେ କରେ ଅନ୍ୟମାନେ ସେମାନଙ୍କ କାର୍ଯ୍ୟ ଠିକ୍ ଭାବେ କରିବେ । ଫଳରେ

ଦେଶର ପ୍ରକୃତ ଉନ୍ନତି ମୋଠାରୁ ହିଁ ଆରମ୍ଭ ହେବ । ଭଲ ଗୁଣ ମଙ୍ଗଳଦାୟକ । ଭାରତ ପାଇଁ ମୋ ଜୀବନ ମହତ୍ତ୍ୱପୂର୍ଣ୍ଣ । **''ଆମେ ଆଜି ସଂସ୍କାରକ ଚାହୁଁ, ଅନ୍ୟକୁ ସଂସ୍କାରିତ କରିବା ପାଇଁ ନୁହେଁ, କିନ୍ତୁ ନିଜେ ସଂସ୍କାରିତ ହେବା ପାଇଁ ।''** – ମହାତ୍ମା ଗାନ୍ଧୀ ।

୧୯୮୫

କର୍ତ୍ତବ୍ୟ ଏବଂ ଅଧିକାର ଉପରେ ଲିଖିତ ପ୍ରବନ୍ଧ ପଢ଼ିଲି । ମୋ କର୍ତ୍ତବ୍ୟ ବିଷୟରେ ମୋତେ କେହି କିଛି କହିଲେ ନାହିଁ କାହିଁକି ? କାର୍ଲାଇଲ୍ କହିଛନ୍ତି, **''ତୁମ ହାତ ପାଖରେ ଥିବା କର୍ତ୍ତବ୍ୟ କରି ଯାଅ । କ୍ରମେ ଅନ୍ୟ କର୍ତ୍ତବ୍ୟ ତୁମ ସାମ୍ନାରେ ପରିସ୍ଫୁଟ ହେବ ।''**

୧୯୮୫-ତାରିଖ ଅସ୍ପଷ୍ଟ

ମୋ ପରିବାର ପ୍ରତି ମୋର କର୍ତ୍ତବ୍ୟ ଅଛି । ମୋ ଦେଶପ୍ରତି ମୋର କର୍ତ୍ତବ୍ୟ ଅଛି । ସ୍ୱାମୀଜୀ ସୂଚାଇ ଦେଇଛନ୍ତି ଯେ ଦେଶର ସେବା କରିବା ପାଇଁ ଆମର ଧର୍ମ ଆମକୁ ପ୍ରେରଣା ଦିଏ, ''ମୁଁ ସେମାନଙ୍କୁ ଦେଶଦ୍ରୋହୀ ବୋଲି କହେ, ଯେଉଁମାନେ ଶିକ୍ଷିତ ହୋଇ, ଲକ୍ଷ ଲକ୍ଷ ନିଷ୍ପେଷିତ କଠିନ ପରିଶ୍ରମକାରୀ ଗରିବ ଲୋକଙ୍କ ହୃଦୟ ରକ୍ତରେ ଅର୍ଜିତ ଅର୍ଥରେ ବିଳାସ କରନ୍ତି କିନ୍ତୁ ସେହି ଗରିବମାନଙ୍କ ପାଇଁ କେବେ ବି ଚିନ୍ତା କରନ୍ତି ନାହିଁ ।'' ଆଃ, କି ସାହସୀକ ବାଣୀ ! ପୁନଶ୍ଚ, ''ତ୍ୟାଗ କର-ତୁମ ଶାରୀରିକ ସୁଖ, ତୁମର ଆନନ୍ଦ, ତୁମର ନାମ, ଯଶ କିମ୍ବା ପଦ, ଏପରିକି ତୁମର ଜୀବନ ଏବଂ ମାନବ ଶୃଙ୍ଖଳର ଏକ ପୋଲ ନିର୍ମାଣ କର ଯାହା ଉପର ଦେଇ ଲକ୍ଷ ଲକ୍ଷ ଲୋକ ଏହି ଜୀବନ ସାଗରକୁ ପାର ଉତ୍ତାର ହେବେ ।''

**ଦୟା ଓ ମାୟା**

ମନେରଖ ଦୟା ଅର୍ଥାତ୍ କରୁଣା, ମାୟା ଅର୍ଥାତ୍ ଆସକ୍ତି ଦୁଇଟି ଅଲଗା ଭାବ । ଆସକ୍ତି ହେଉଛି ନିଜ ପରିବାରର ସଦସ୍ୟଙ୍କ ପ୍ରତି ଅନୁରକ୍ତି । ଏହି ମାୟା ଗୋଟିଏ ଭାବନା, ଏହା କ'ଣ ଜାଣ ? ବାପା, ମାଆ, ଭାଇ, ଭଉଣୀ, ସ୍ତ୍ରୀ, ପୁତ୍ର, ଭଣଜା, ପୁତୁରା, ଝିଆରୀ – ଏହି ସବୁ ଆତ୍ମୀୟମାନଙ୍କ ପ୍ରତି ଆକର୍ଷଣ ଓ ସ୍ନେହ ।

ଦୟା ହେଉଛି ଏକ ଭାବନା । ଏହାର ଅର୍ଥ ସର୍ବ ଭୂତରେ ମୋର ହରି ଅଛନ୍ତି – ଏହା ଜାଣି ସମସ୍ତଙ୍କୁ ସମାନ ଭାବରେ ଭଲ ପାଇବା ଓ ସ୍ନେହ କରିବା । ମାୟା ଆମକୁ ଅନ୍ଧ କରିଦିଏ କିନ୍ତୁ ଦୟା ଆମର ହୃଦୟକୁ ପବିତ୍ର କରିଦିଏ ।

ଶ୍ରୀରାମକୃଷ୍ଣ

୬ ଅପ୍ରେଲ ୧୯୮୫

ଅକସ୍ମାତ୍ ଶ୍ରୀ ଜି.ଏସ୍.ବରୁଆଙ୍କ ସହିତ ଟ୍ରେନ୍‌ରେ ଭେଟ ହେଲା । ଆମ ଦେଶ ବିଷୟରେ ବହୁ ସମୟ ଧରି ଆଲୋଚନା ହେଲା । ନିମ୍ନଲିଖିତ ଚିନ୍ତାଧାରା ଗୁଡ଼ିକ ମୋ ମନକୁ ଆସିଲା :

ମୁଁ.....ମୋ ପରିବାର.....ମୋ ଅଞ୍ଚଳ..... ମୋ ରାଜ୍ୟ.... ମୋ ଦେଶ : ଏହା ଭୌଗୋଳିକ ଦୃଷ୍ଟିକୋଣରୁ ।

ମୁଁ.... ମୋ ପରିବାର.... ମୋ ସମାଜ ଏବଂ ଭାଷା.... ମୋ ଧର୍ମ.... ମୋ ଜାତି : ଏହା ସାଂସ୍କୃତିକ ଦୃଷ୍ଟିକୋଣରୁ ।

ଯେ କୌଣସି ଦୃଷ୍ଟିକୋଣରୁ ହେଉନା କାହିଁକି ମୁଁ ଏବଂ ମୋ ପରିବାର ଏହି ଦେଶର ଆଧାର । ତେଣୁ, ଭାରତର କିଛି ପରିବର୍ତ୍ତନ ଆଣିବା ପୂର୍ବରୁ, ସର୍ବ ପ୍ରଥମେ ମୋ ନିଜକୁ ଏବଂ ମୋ ପରିବାରକୁ ଶିକ୍ଷା ଦେବାକୁ ପଡ଼ିବ ।

୧୦ ନଭେମ୍ବର ୧୯୮୫

ଟ୍ରେନ୍‌ରେ ଶ୍ରୀ ବରୁଆଙ୍କ ପରାମର୍ଶରେ, ଏ.ଏଲ୍.ବାସାମ୍‌ଙ୍କ ଦ୍ୱାରା ଲିଖିତ 'ଦ ୱାଣ୍ଡର୍ ଦ୍ୟାଟ୍ ୱାଜ୍ ଇଣ୍ଡିଆ' ପୁସ୍ତକଟି ପଢ଼ିଲି । ମନୁଷ୍ୟ ! କେତେ ବଡ଼ ଉଦାହରଣ !!

୧୯୮୬ – ତାରିଖ ଅସ୍ପଷ୍ଟ

ଗଣେଶଙ୍କ ପାଖରୁ ଖଣ୍ଡେ ଚିଠି ପାଇଲି । ଚିଠିଟି ପଢ଼ି ସାରିବା ପରେ ମୋ ମନକୁ ଗୋଟିଏ ପ୍ରଶ୍ନ ଆସିଲା : ଆମ ଇତିହାସକୁ ଠିକ୍ ଭାବେ ନ ଜାଣି, ପୂର୍ବ ପୁରୁଷମାନଙ୍କର କୀର୍ତ୍ତି ନ ଜାଣି, ଅତୀତର ଗୌରବକୁ ସ୍ମରଣ ନ କରି, ଆମର ପ୍ରକୃତ ଦେଶ ପ୍ରେମ ଜାଗ୍ରତ ହେବ କି ?

୩ ଅପ୍ରେଲ ୧୯୮୬

ରଶ୍ମି ସହିତ ବିବାହ ସ୍ଥିର ହୋଇଗଲା । ଆମ ଦୁଇଜଣଙ୍କ ଦୃଷ୍ଟିଭଙ୍ଗିରେ ସାମଞ୍ଜସ୍ୟ ଅଛି ଜାଣି ଖୁସି ହେଲି । ସେ ମୋତେ ବିଜ୍ଞ ନାଗରିକ ପଦର ଅର୍ଥ ବୁଝାଇଲା । ସତରେ ଏହା ଏକ ମହାନ୍ ଭାବନା !

୯ ଅପ୍ରେଲ ୧୯୮୬

ରଶ୍ମି ମୋତେ ଇତିହାସ ସମ୍ପର୍କରେ ଏକ ନୂତନ ଧାରଣା ଦେଲା – ଇତିହାସ ହେଉଛି ମହାପୁରୁଷମାନଙ୍କ ଜୀବନ ଚରିତ ।

୨୨ ମଇ ୧୯୮୬

ମା ଏବଂ ରଶ୍ମିଙ୍କର ମାନସିକ ସମ୍ପର୍କ ସ୍ୱତନ୍ତ୍ର । ଅନ୍ୟ ପରିବାର ଭଳି ନୁହେଁ । ମା କହିଲେ, "ରଶ୍ମି, ମୁଁ ତୁମର ଶାଶୁ ନୁହେଁ, ମୁଁ ତୁମର ପ୍ରେମମୟୀ ମା ।"

୧୯୮୭ ରୁ ୧୯୯୭ ପର୍ଯ୍ୟନ୍ତ ଲେଖା ନାହିଁ ।

୫ ସେପ୍ଟେମ୍ବର ୧୯୯୮

ଆମର ଦ୍ୱିତୀୟ ସନ୍ତାନ ରାଧାର ଆଜି ସ୍କୁଲରେ ନାମ ଲେଖା ଗଲା । ଶଶି ସପ୍ତମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲା ।

୧୩ ଫେବୃଆରୀ ୧୯୯୯

ମା'ଙ୍କ ସାଥିରେ ତୀର୍ଥରୁ ଫେରିଲି । ବାପାଙ୍କ ମୃତ୍ୟୁପରେ ତୀର୍ଥ କରିବା ପାଇଁ ମା'ଙ୍କର ଏକ ମାତ୍ର ଇଚ୍ଛା ଥିଲା । ତୀର୍ଥ ଭ୍ରମଣରେ ଅନେକ ଶିକ୍ଷାଭିତ୍ତିକ ତଥ୍ୟ ଜାଣିବାର ଅଛି, ଏହା ମୁଁ ଅନୁଭବ କଲି । ଆଶ୍ରମରେ ୧୨ ଜାନୁଆରୀ (ଜାତୀୟ ଯୁବ ଦିବସ)ରେ ଅନୁଷ୍ଠିତ ସମାରୋହରେ ସାମାଜିକ ରୀତି ଓ ପୌରାଣିକ ଉପାଖ୍ୟାନ ମାଧ୍ୟମରେ ଶିକ୍ଷା ବିଷୟରେ ପ୍ରାଧ୍ୟାପକ ମୁଖୋପାଧ୍ୟାୟ ବୁଝାଇଥିଲେ ।

ବୋଧହୁଏ ଆମ ପୂର୍ବ ପୁରୁଷମାନଙ୍କର ମୁଖ୍ୟତଃ ଏହି ଧାରଣା ଥିଲା ଯେ ତୀର୍ଥ ଯାତ୍ରା ଦ୍ୱାରା ବିଭିନ୍ନ ଅଞ୍ଚଳକୁ ଏକତ୍ର କରି ଗୋଟିଏ ଦେଶରେ ପରିଣତ କରି ହେବ ।

୩୧ ମଇ ୨୦୦୦

ଶଶିକୁ ଆଜି ୧୪ ବର୍ଷ ପୁରିଲା । ତାକୁ "ଲେକ୍‌ଚର୍ସ ଫ୍ରମ୍ କଲମ୍ବୋ ଟୁ ଆଲମୋରା" ପୁସ୍ତକଟି ଦେଲି । ରଶ୍ମି ସହିତ ମିଶି ସବୁଦିନ ସେ ପୁସ୍ତକଟି ପଢ଼ିବ ବୋଲି ଯୋଜନା କରିଛି ।

୧୬ ଡିସେମ୍ବର ୨୦୦୨

ଭଗବାନ, ପ୍ରକୃତରେ ତୁମେ ହିଁ ମହାନ୍ ! ଶଶିଠାରେ ସ୍ୱାମୀଜୀଙ୍କ ଭାବ ପ୍ରବେଶ କରିଛି । ଏଥି ପାଇଁ ରଶ୍ମି ପ୍ରଶଂସା ପାଇବାର ଯୋଗ୍ୟା । ନେପୋଲିଅନ୍ ଥରେ କହିଥିଲେ । ''ମୋତେ ମହାନ୍ ମାଆ ମାନଙ୍କୁ ଦିଅ ଏବଂ ମୁଁ ତୁମକୁ ଗୋଟିଏ ମହାନ୍ ଦେଶ ଦେବି !'' ମୁଁ ବର୍ତ୍ତମାନ ତାହା ଅନୁଭବ କରୁଛି ।

୨୯ ଡିସେମ୍ବର ୨୦୦୨

ଶଶି ମୋତେ ପଚାରିଲା, ଧର୍ମ ନିରପେକ୍ଷତା ଏବଂ ଧର୍ମ-ଧର୍ମ ମଧ୍ୟରେ ସୁସଙ୍ଗତ ଭିତରେ ପାର୍ଥକ୍ୟ କ'ଣ ? ତାକୁ ସନ୍ତୋଷଜନକ ଉତ୍ତର ଦେଇ ପାରିଲି ନାହିଁ । ଏହି ପ୍ରଶ୍ନ ଉପରେ ଗବେଷଣା କରିବି । ମୁଁ ମୋ ପୁଅ ପାଇଁ ଗର୍ବିତ ।

୨୦୦୨ ରୁ ୨୦୧୬ ମଧ୍ୟରେ ଅଧିକାଂଶ ଲେଖା ପଢ଼ି ହେଉନାହିଁ ।

୧୪ ଜୁନ୍ ୨୦୧୬

ରାଧା ମାଷ୍ଟର ଡିଗ୍ରୀ ପାଇଁ ଆମେରିକା ଯାଇଥିଲା । ସେ ତା'ର ଜାତୀୟତା ସମ୍ବନ୍ଧରେ ପ୍ରଶ୍ନ ଉଠାଇଲା । ସେ ଯେତେବେଳେ ଆମେରିକାରେ ଅଛି, ସେ ନିଜକୁ ଭାରତୀୟ ନା ଆମେରିକାବାସୀ ବୋଲି ବିବେଚନା କରିବ ? ତାର ଆନୁଗତ୍ୟ ଭାରତ ପ୍ରତି ନା ଆମେରିକା ପ୍ରତି ରହିବ ? ମୁଁ ଭାବୁଛି ସ୍ୱାମୀଜୀ ଆମେରିକାରେ ଥିଲା ବେଳେ କିପରି ଅନୁଭବ କରୁଥିଲେ । ସେ ଏ ବିଷୟରେ କିଛି କହିଛନ୍ତି କି ନାହିଁ ମୋତେ ଖୋଜି ବାହାର କରିବାକୁ ପଡ଼ିବ ।

୧୬ ଜୁନ୍ ୨୦୧୬

ଆଜି ଏକ ଆଶ୍ଚର୍ଯ୍ୟ କଥା ଲକ୍ଷ୍ୟ କଲି । ବିଗତ ୪୦ ବର୍ଷ ଧରି ସମସ୍ତ ଭାରତୀୟଙ୍କ ମଙ୍ଗଳ କାମନା କରି ମୁଁ ପ୍ରାର୍ଥନା କରି ଆସିଛି । କିନ୍ତୁ ଆଜି ମୁଁ ଅଜ୍ଞାତ ଭାବରେ ଆମେରିକାବାସୀଙ୍କ ପାଇଁ ମଧ୍ୟ ପ୍ରାର୍ଥନା କରୁଥିବାର ଅନୁଭବ କଲି । କାହିଁକି ? କାରଣ ମୋ ଝିଅ ବର୍ତ୍ତମାନ ସେଠାରେ ଅଛି । ପ୍ରକୃତରେ ମୁଁ ଅନୁଭବ କଲି ଜଣେ ନିଜ ଦେଶକୁ ଭଲ ପାଇବା ସଂକୀର୍ଣ୍ଣତାର ପରିଚୟ ହୋଇପାରେ । ହେ ଭଗବାନ ! ମୋ ମନରେ ଏହି ଦ୍ୱନ୍ଦ୍ୱ କ'ଣ ପାଇଁ ? ରଶ୍ମି ଆମ୍ବାଲାରୁ ଫେରିଲାପରେ ତା' ସହିତ ଏହି ବିଷୟରେ ଆଲୋଚନା କରିବି ।

୨୨ ଜୁନ୍ ୨୦୧୬

ମୁଁ ହୃଦୟଙ୍ଗମ କରୁଛି, ଦେଶପ୍ରେମ ଯଥେଷ୍ଟ ନୁହେଁ । ମୁଁ ଯେତେବେଳେ ବିଶ୍ୱର ସମସ୍ତଙ୍କୁ ଭଲ ପାଇବି, ସେତେବେଳେ ମୋ ଦେଶପ୍ରେମ ସମ୍ପୂର୍ଣ୍ଣ ହେବ । କାରଣ ଗୋଟିଏ ଦେଶ ଅବିଚ୍ଛେଦ୍ୟ ଭାବରେ ଅନ୍ୟ ଦେଶ ସହିତ ସଂଯୁକ୍ତ । ସମଗ୍ର ବିଶ୍ୱ ଗୋଟିଏ ଜାତି ।

'ବିଦେଶୀ ଭାରତୀୟ' ଦୂରଦର୍ଶନ କାର୍ଯ୍ୟକ୍ରମଟି ମୋତେ ଖୁବ୍ ଭଲ ଲାଗିଲା ।

୨୪ ଜୁନ୍ ୨୦୧୬

ସ୍ୱାମୀଜୀ କହିଛନ୍ତି : ''ସ୍ୱଦେଶୋ ଭୁବନ ତ୍ରୟମ୍'' - ଏହାର ଅର୍ଥ ସମଗ୍ର ବିଶ୍ୱ ମୋର ଦେଶ ।

ଜାତୀୟତା ସମ୍ବନ୍ଧୀୟ ପ୍ରଶ୍ନଟି ମୁଁ ବର୍ତ୍ତମାନ ଠିକ୍ ବୁଝିପାରିଛି । ମୁଁ ଏହିପରି ଭାବରେ ବୁଝିଛି : ଜଣେ ବ୍ୟକ୍ତି ଭାବରେ ମୁଁ ଏହି ବିଶ୍ୱର କେନ୍ଦ୍ର । ଯେଉଁ ସମାଜ କଥା କୁହ, ତା'ର ମୂଳ ଉପାଦାନ ହେଉଛି ଜଣେ ବ୍ୟକ୍ତି । ଲୋକମାନଙ୍କୁ ଆଧାର କରି ପରିବାର । ଲୋକମାନଙ୍କୁ ଆଧାର କରି ରାଜ୍ୟ । ଲୋକମାନଙ୍କୁ ନେଇ

ଗୋଟିଏ ଜାତି । ସର୍ବୋପରି ସମଗ୍ର ବିଶ୍ୱ ଏହି ଲୋକମାନଙ୍କୁ ନେଇ ଗଠିତ । ପ୍ରତ୍ୟେକ ବ୍ୟକ୍ତି ସ୍ୱାଭାବିକ ଭାବରେ ବିକଶିତ ହେଉଛନ୍ତି । ଜଣେ ପୁରୁଷ କିମ୍ବା ନାରୀ ତାଙ୍କର ଅନ୍ତର୍ଚେତନା ଶକ୍ତି ଓ ସାମର୍ଥ୍ୟକୁ ଧୀର ଭାବରେ ଅଧିକରୁ ଅଧିକ ପ୍ରକଟ କରୁଛନ୍ତି ।

ଏହାର ପ୍ରକଟ ଦ୍ରୁତଭାବରେ ହୋଇପାରିବ ନାହିଁ । ଏହା ଅତ୍ୟନ୍ତ ଧୀର, ସମୟ ସାପେକ୍ଷ ଏବଂ ସୂକ୍ଷ୍ମ ପ୍ରକ୍ରିୟା । 'ମୁଁ ପରିବାରର ଏବଂ ପରିବାରର ସଦସ୍ୟମାନେ ମୋର,' 'ମୁଁ ଗୋଷ୍ଠୀର ଏବଂ ଗୋଷ୍ଠୀର ଲୋକମାନେ ମୋର,' 'ମୁଁ ଏହି ଜାତିର ଏବଂ ଜାତିର ଲୋକମାନେ ମୋର', ଇତ୍ୟାଦି ଧାରଣା ବ୍ୟକ୍ତିର ଉନ୍ନତିରେ ସହାୟକ ହୋଇଥାନ୍ତି ।

କିନ୍ତୁ ଏହି ସବୁ ଧାରଣାରୁ ଉର୍ଦ୍ଧ୍ୱକୁ ଯାଇ ଆମେମାନେ ଅନ୍ୟ ଏକ ସମ୍ମେଳନରେ ପହଞ୍ଚିବା ଯେଉଁଠି ଆମେ ଅନୁଭବ କରିବା, 'ମୁଁ ସମଗ୍ର ବିଶ୍ୱର ଏବଂ ଏହି ବିଶ୍ୱର ପ୍ରତ୍ୟେକ ମୋର ।' ମାନବ ବିକାଶରେ ଏହା ସର୍ବୋତ୍କୃଷ୍ଟ ଅନୁଭୂତି ।

ମୁଁ ନିଶ୍ଚିତ ସେଠି ପହଞ୍ଚିବି ।

**୪ ଜୁଲାଇ ୨୦୧୬**

ଗତ ରାତିରେ ମୁଁ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲି । ସ୍ୱାମୀଜୀ ନିବେଦନ ଭରା ଆଖିରେ ଚାହିଁଥିଲେ । ସତେ ଯେପରି କହିବାକୁ ଚାହୁଁଛନ୍ତି, 'ସମସ୍ତଙ୍କ ପାଇଁ ଅନୁଭବ କର ।' ମୁଁ ଦୁଃଖ ଏବଂ ଆନନ୍ଦ ମିଶ୍ରିତ ଭାବନାରେ ଉଠି ପଡ଼ିଲି । ଆନନ୍ଦିତ ହେବାର କାରଣ ମୁଁ ସ୍ୱାମୀଜୀଙ୍କୁ ଦେଖି ପାରିଲି, ଏବଂ ଦୁଃଖିତ ହେବାର କାରଣ ସ୍ୱାମୀଜୀଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ମୁଁ ସମର୍ଥ ହୋଇପାରି ନାହିଁ । ମୋତେ ଆହୁରି କିଛି ଉନ୍ନତି କରିବାକୁ ପଡ଼ିବ । ମୁଁ ଆଗକୁ ବଢ଼ିବି । ରଶ୍ମି, ଶଶି, ରାଧା ଓ ମୋତେ ଏବଂ ପ୍ରତ୍ୟେକଙ୍କୁ ହୃଦୟ ବିସ୍ତାରିତ କରିବାକୁ ପଡ଼ିବ – ଏକ ସାର୍ବଜନୀନ ହୃଦୟ । ଏହି ବିଶାଳ ହୃଦୟ ସାରା ବିଶ୍ୱକୁ ନିଜର କରିପାରିବ । 'ବସୁଧୈବ କୁଟୁମ୍ବକମ୍ '






# ତୁମ ମାତୃଭୂମିକୁ ତୁମେ କେତେ ଭଲ ଭାବରେ ଜାଣ ?

## ଭାରତ କେତୋଟି ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳକୁ ନେଇ ଗଠିତ, ତୁମେ ଜାଣ କି ?

ଉତ୍ତର – ଗପସପ ୫ରେ ଦେଖନ୍ତୁ

# ତୁମ ପାଇଁ କାର୍ଯ୍ୟ

ଶିକ୍ଷକଙ୍କ ସାହାଯ୍ୟ ନେଇ ଭାରତର ସମସ୍ତ ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳର ଏକ ତାଲିକା ପ୍ରସ୍ତୁତ କର ଏବଂ ସେଗୁଡ଼ିକୁ ବର୍ଣ୍ଣ କ୍ରମରେ ସଜାଇ ଲେଖ । ତୁମେ ଏକ ଭଲ ଭାରତ ମାନଚିତ୍ରର ସାହାଯ୍ୟ ନେଇପାର । ପ୍ରତ୍ୟେକ ପିଲା ତାଙ୍କ ରୋଲ ନମ୍ବରର କ୍ରମ ଅନୁଯାୟୀ ରାଜ୍ୟ ବା କେନ୍ଦ୍ର ଶାସିତ ଅଞ୍ଚଳ ବିଷୟରେ କିଛି କିଛି ତଥ୍ୟ ସଂଗ୍ରହ କରିବା ଉଚିତ ।

ଉଦାହରଣ ସ୍ୱରୂପ ରୋଲ ନଂ ୧ ଥିବା ପିଲା ଯଦି ରାଜ୍ୟ –୧ ବା କେନ୍ଦ୍ର ଶାସିତ ଅଞ୍ଚଳ–୧ ବିଷୟରେ ତଥ୍ୟ ସଂଗ୍ରହ କରେ, ତେବେ ରୋଲ ନଂ–୨ ଥିବା ପିଲା ରାଜ୍ୟ–୨ ବା କେନ୍ଦ୍ର ଶାସିତ ଅଞ୍ଚଳ–୨ ବିଷୟରେ ତଥ୍ୟ ସଂଗ୍ରହ କରିବେ ।

ଯଦି ଛାତ୍ରମାନଙ୍କ ସଂଖ୍ୟା ରାଜ୍ୟ ବା କେନ୍ଦ୍ର ଶାସିତ ଅଞ୍ଚଳଠାରୁ ଅଧିକ ହୁଏ, ତା'ହେଲେ ପୁନଶ୍ଚ ପୂର୍ବ କ୍ରମରେ ଛାତ୍ରମାନେ ରାଜ୍ୟ ବା କେନ୍ଦ୍ର ଶାସିତ ଅଞ୍ଚଳର ତଥ୍ୟ ସଂଗ୍ରହ କରିବେ । ଯାହା ଫଳରେ ଏକାଧିକ ଛାତ୍ର ଗୋଟିଏ ରାଜ୍ୟ ବା କେନ୍ଦ୍ର ଶାସିତ ଅଞ୍ଚଳ ବିଷୟରେ ତଥ୍ୟ ସଂଗ୍ରହ କରିପାରିବେ ।

ପ୍ରତ୍ୟେକ ପିଲା ୫ ମିନିଟ୍ ମଧ୍ୟରେ ସଂଗ୍ରହ କରିଥିବା ସେମାନଙ୍କର ତଥ୍ୟ ଶିକ୍ଷକଙ୍କୁ ଦେବେ ।

ତଥ୍ୟଗୁଡିକ ଏହିଭଳି ହେବା ଉଚିତ, ଯଥା – ରାଜ୍ୟ ବା କେନ୍ଦ୍ର ଶାସିତ ଅଞ୍ଚଳର ରାଜଧାନୀ, ଏହାର ଇତିହାସ, ଏହାର ଜିଲ୍ଲାମାନଙ୍କର ନାମ, ମୁଖ୍ୟ ନଦୀମାନଙ୍କର ନାମ, ତୀର୍ଥସ୍ଥାନ, ଏହାର ଭାଷା, ଏହାର ମୁଖ୍ୟ ପର୍ବ ପର୍ବାଣୀ, ସାଧୁସନ୍ଥ ଏବଂ ଆଧ୍ୟାତ୍ମିକ ଗୁରୁମାନଙ୍କର ନାମ, ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ନାମ ଏବଂ ପ୍ରସିଦ୍ଧ ବ୍ୟକ୍ତି ବିଶେଷଙ୍କ ନାମ ଇତ୍ୟାଦି ।

# ସମୃଦ୍ଧ ଭାରତ ଗଠନ ପାଇଁ ପ୍ରତିଶ୍ରୁତିବଦ୍ଧ ହେବା



**ସାଧାରଣ ଜ୍ଞାନ ପ୍ରଶ୍ନ :**

୧) ଭାରତର ୧୧ତମ ରାଷ୍ଟ୍ରପତି ଡ. ଅବଦୁଲ୍ କଲାମ୍‌ଙ୍କ ପୁରା ନାମ କ'ଣ ?

୨) ଭାରତୀୟ ସେନାବାହିନୀର ମୁଖ୍ୟ କିଏ ?

୩) ରାଜ୍ୟସଭାର ସଭା କାର୍ଯ୍ୟ କିଏ ପରିଚାଳନା କରନ୍ତି ?

ଉତ୍ତର – ଗପସପ ୫ ରେ ଦେଖନ୍ତୁ ।

ସ୍ୱାମୀ ବିବେକାନନ୍ଦଙ୍କର ସନ୍ଦେଶ (ବାଣୀ) ଅଦ୍ୱିତୀୟ ଏବଂ ସମଗ୍ର ବିଶ୍ୱପାଇଁ ଏହା ଜରୁରି । ବିବେକାନନ୍ଦ କହିଛନ୍ତି, ମୋର ନାମକୁ ସୁପ୍ରସିଦ୍ଧ କରିବା ଦରକାର ନାହିଁ । ମୋର ଉଦ୍ଦେଶ୍ୟ ବାସ୍ତବରେ ପରିଣତ ହେବା ପାଇଁ ମୁଁ ଚାହେଁ ।

– ଅବଦୁଲ୍ କଲାମ୍

## ତୁମ ପାଇଁ କାର୍ଯ୍ୟ :

ଥରେ ଡ. ଅବଦୁଲ୍ କଲାମ୍ ତୁମରି ପରି ଗୋଟିଏ ଝିଅକୁ ପଚାରିଲେ, "ତୁମର ସ୍ୱପ୍ନ କ'ଣ ?" ଝିଅଟି ଉତ୍ତର ଦେଲା, "ମୁଁ ସମୃଦ୍ଧ ଭାରତରେ ବଞ୍ଚିବାକୁ ଚାହେଁ ।"

ଡ. କଲାମ୍ ଗୋଟିଏ ପୁସ୍ତକ ରଚନା କରିଛନ୍ତି, "India 2020 : A vision for the New Millennium" ଯେଉଁଥିରେ ସେ ଭାରତର ଦୁର୍ବଳତା ଓ ସାମର୍ଥ୍ୟ ବିଷୟରେ ଗଭୀରଭାବରେ ବର୍ଣ୍ଣନା କରିଛନ୍ତି ଏବଂ ୨୦୨୦ ସୁଦ୍ଧା ଭାରତ କିପରି ଏକ ସମୃଦ୍ଧ ରାଷ୍ଟ୍ରରେ ପରିଣତ ହେବ ସେ ବିଷୟରେ ଏକ ଝଲକ ଦେଇଛନ୍ତି । ଯେଉଁ ଝିଅଟି ସମୃଦ୍ଧ ଭାରତରେ ରହିବାର ସ୍ୱପ୍ନ ଦେଖୁଥିଲା ତା' ପାଇଁ ସେ ଏହି ପୁସ୍ତକଟିକୁ ଉତ୍ସର୍ଗ କରିଦେଇଛନ୍ତି ।

(ସମୃଦ୍ଧ ରାଷ୍ଟ୍ରର ଅର୍ଥ କ'ଣ ତୁମେ ଜାଣ ? ଭାରତକୁ ସମୃଦ୍ଧ ରାଷ୍ଟ୍ରରେ ପରିଣତ କରିବା ପାଇଁ ତୁମର ଅବଦାନ କିଭଳି ହେବା ଦରକାର ?)

ଶିକ୍ଷକଙ୍କ ସହାୟତାରେ ତୁମ ଶ୍ରେଣୀକୁ ୪ଟି ଦଳରେ ବିଭକ୍ତ କର । ପ୍ରତ୍ୟେକ ଦଳକୁ ଏହି ବିଷୟରେ ତଥ୍ୟ ସଂଗ୍ରହ କରିବାକୁ ସୁଯୋଗ ଦିଅ । ପ୍ରତ୍ୟେକ ଦଳର ୨ ଜଣ ବକ୍ତା ସେମାନଙ୍କର ମତାମତ ଶ୍ରେଣୀ ସମ୍ମୁଖରେ ଉପସ୍ଥାପନ କରନ୍ତୁ । ପ୍ରତ୍ୟେକ ବକ୍ତା ୫ ମିନିଟ୍ ଏହି ବିଷୟରେ କୁହନ୍ତୁ ।







## ଅଧ୍ୟାୟ – ୫

# ଏଠାରେ ମୁଁ ରହିବି

''କିଛି ଲୋକ କୁହନ୍ତି ଈଶ୍ୱର ମନୁଷ୍ୟଙ୍କୁ ସୃଷ୍ଟି କଲେ, ଅନ୍ୟ କେତେକ ଲୋକ କହନ୍ତି ଯେ ମନୁଷ୍ୟ ଈଶ୍ୱରଙ୍କୁ ସୃଷ୍ଟି କଲେ'', ଗୋପାଳର ବାପା ଏକଥା ଗୋପାଳକୁ କହିଲେ ।

ଗୋପାଳ ତା' କିଶୋର ବୟସରେ ଖୁବ୍ ମେଧାବୀ ଥିଲା । ଜ୍ଞାନ ଆହରଣ ପାଇଁ ତା'ର ଆଗ୍ରହ ଅସୀମ ଥିଲା । ପ୍ରତିଦିନ ରାତ୍ରି ଭୋଜନ ପରେ ସେ ତା' ବାପାଙ୍କ ସହିତ ବୁଲାବୁଲି କରେ ଏବଂ ସେହି ଦିନର ସ୍କୁଲ ପଢ଼ା ବିଷୟରେ ସେମାନେ ଆଲୋଚନା କରନ୍ତି । ତା' ବାପା ବିଷୟଗୁଡ଼ିକୁ ଚମତ୍କାର ଏବଂ ପ୍ରାଞ୍ଜଳ ଭାବରେ ବୁଝାଇ ଦିଅନ୍ତି । ବେଳେ ବେଳେ ସେ ଗୋପାଳକୁ ତର୍କ କରିବାକୁ ଉତ୍ସାହିତ କରନ୍ତି । ଦିନେ ଆଲୋଚନା ପୃଥିବୀର ବିଭିନ୍ନ ଧର୍ମ ବିଷୟ ଆଡ଼କୁ ଚାଲିଗଲା ଏବଂ ଆଲୋଚନା ସମୟରେ ଗୋପାଳର ବାପା ତାକୁ ଉପରଲିଖିତ ଉକ୍ତିଟି କହିଥିଲେ । ଅନେକ ଧର୍ମର ଅନେକ ଧାରଣା ବିଷୟରେ ସେହି ରାତ୍ରିରେ ବୁଲିବା ସମୟରେ ସେଠାରେ ଆଲୋଚନା ହେଲା । ବିଭିନ୍ନ ଧର୍ମର ଲୋକମାନେ ଭଗବାନଙ୍କ ବିଷୟରେ କ'ଣ କହନ୍ତି, ଜୀବନର ଲକ୍ଷ୍ୟ କ'ଣ, ବିଶ୍ୱ ଇତିହାସ କିପରି ଧର୍ମ ସହିତ ଜଡିତ, ପ୍ରଭୃତି ବିଷୟରେ ଆଲୋଚନା ହେଲା ।





ଆଲୋଚନା କରି କରି ସେମାନେ ଘରେ ପହଞ୍ଚିଲେ । ଘରେ ପ୍ରବେଶ କଲାବେଳେ, ଗୋପାଳର ବାପା ତାକୁ ଅଙ୍କା ଯାଇଥିବା ଏକ ସୁନ୍ଦର ଚିତ୍ର ଦେଖାଇଲେ । ଚିତ୍ରଟିକୁ ସେ ସେହି ଦିନ ଆଣିଥିଲେ । ଚିତ୍ରଟିକୁ ଦେଖାଇ ତା ବାପା କହିଲେ, ''ଏହି ଚିତ୍ରଟି ଧର୍ମ-ଧର୍ମ ମଧ୍ୟରେ ଥିବା ସୁସଙ୍ଗତକୁ ଦର୍ଶାଉଛି । ଅନ୍ୟ କେଉଁଦିନ ମୁଁ ଏହାର ଅର୍ଥ ବୁଝାଇବି ।'' ଗୋପାଳ ନିମ୍ନଲିଖିତ ବିଷୟରେ ଗଭୀର ଭାବରେ ଚିନ୍ତା କରି ଶୋଇ ପଡ଼ିଲା :

ଏତେ ଗୁଡ଼ିଏ ଧର୍ମ କାହିଁକି ଅଛି ?

ଯଦି ଗୋଟିଏ ଧର୍ମ ସତ୍ୟ, ତେବେ ସେହି ଧର୍ମଟି ବ୍ୟତୀତ ଅନ୍ୟ ଧର୍ମର ଆବଶ୍ୟକତା କ'ଣ ?















ଏହା ହୋଇପାରେ ଯେ, ସବୁ ଧର୍ମ ସତ୍ୟ ।

ଜଣାପଡୁଛି, ଧର୍ମ-ଧର୍ମ ମଧ୍ୟରେ ଏକତା ଅପେକ୍ଷା ଅଧିକ ଭିନ୍ନତା ଅଛି । ଏହି ପରିସ୍ଥିତିରେ ଯଦି ଆମେ ଧର୍ମ ଗୁଡ଼ିକ ମଧ୍ୟରେ ଏକତା ସ୍ଥାପନ ପାଇଁ ଚେଷ୍ଟା କରିବା, ଏହା କ'ଣ ନିର୍ଜୀବ, କୃତ୍ରିମ ଏକତା ହେବ ନାହିଁ ? ଏହି ପ୍ରଶ୍ନଗୁଡିକ ଉପରେ ଅତ୍ୟନ୍ତ ଚିନ୍ତା ମଗ୍ନ ହୋଇ ସେ ଅବଶ ଅନୁଭବ କଲା ଏବଂ ଧୀରେ ଧୀରେ ଶୋଇ ପଡ଼ି ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲା । ପରେ ସେ ଦେଖିଥିବା ସ୍ୱପ୍ନକୁ ମନେ ପକାଇବା ପାଇଁ ଚେଷ୍ଟା କଲା ...

ମୁଁ ଅନୁଭବ କଲି, ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ମୋତେ ଆମନ୍ତ୍ରଣ କଲେ । ତାଙ୍କର ଦୀପ୍ତିମାନ ଶରୀର ଏବଂ ଘନନୀଳ ଚକ୍ଷୁ ଅନନ୍ତବିସ୍ତାରୀ ଦିଗ୍‌ବଳୟକୁ ସ୍ଥିର ଭାବରେ ଚାହିଁ ରହିଥିଲା । ସେ ମୋ ସହିତ କରମର୍ଦ୍ଦନ କଲେ ଏବଂ କହିଲେ, ''ଗୋପାଳ, ଆସ । ମୁଁ ତୁମକୁ କେତେକ ସ୍ଥାନକୁ ନେଇଯିବି ଯେଉଁ ସ୍ଥାନ ତୁମକୁ ଆଗ୍ରହାନ୍ୱିତ କରାଇବ ।'' ମୁଁ ଭାବିଲି ଏହା ଖୁବ୍ ଆନନ୍ଦଦାୟକ ହେବ । ମୁଁ ଯେତେବେଳେ ଆଶ୍ଚର୍ଯ୍ୟ ହେଉଥିଲି ସେ ମୋତେ କେଉଁ ଆଡ଼କୁ ନେବେ, ମୁଁ ଦେଖିଲି ମୁଁ ତାଙ୍କ ସହିତ ଏକ ଘାସ ପଡ଼ିଆରେ ଦୌଡୁଛି । ସେଠାରେ ଗଛ ନାହିଁ ଏବଂ ପଡ଼ିଆଟି ଥାଳିପରି ସମତଳ । ଆମେ ଦୌଡୁଥିଲା ବେଳେ ଆମର ଗତି ବଢ଼ିଲା ଏବଂ ଉଡ଼ାଜାହାଜ ଉପରକୁ ଉଠିଲା ପରି ଆମେ ଉପରକୁ ଉଠିବାକୁ ଆରମ୍ଭ କଲୁ । ଆମେ ନୀଳ ଆକାଶ ମଧ୍ୟ ଦେଇ ଉଡ଼ି ଉଡ଼ି ଗଲୁ । ମୁଁ ମୋ ଉପରେ ଧଳା ବାଦଲ ଦେଖିଲି ଏବଂ ସେହି ବାଦଲ ଆଡ଼କୁ ଗଲି । ବାଦଲ ସହିତ ଧକ୍କା ହେବା ସମୟରେ ମୋର ଏକ ବିଚିତ୍ର ଅନୁଭବ ହେଲା ଏବଂ ସେଗୁଡ଼ିକୁ ଅତିକ୍ରମ କରି ଆମେ ଉପରକୁ ଗଲୁ ।





## ମୁକ୍ତ ଚିନ୍ତକଙ୍କର ଦୁନିଆ

ଆମେ ସମସ୍ତେ ବାଦଲ ଅତିକ୍ରମ କରି ଗୋଟିଏ ସହରରେ ପ୍ରବେଶ କଲୁ । ସେଠାରେ ପରିବେଶଟି ଅତି ଆନନ୍ଦ ପ୍ରଦାୟକ ଥିଲା । ସେଠାରେ ଲୋକମାନେ ବିଭିନ୍ନ ଆଲୋଚନାରେ ବ୍ୟସ୍ତ ଥିଲେ, ଯଥା: - ଈଶ୍ୱର, ମନୁଷ୍ୟ, ପୃଥିବୀ, କାର୍ଯ୍ୟ-କାରଣ ସମ୍ପର୍କ, କର୍ମ ଓ ପୁନର୍ଜନ୍ମ ଇତ୍ୟାଦି ଇତ୍ୟାଦି ...

ମୋ ବାପାଙ୍କ ସହିତ ରାତିରେ ଚାଲୁଥିବା ସମୟରେ ଯେଉଁ ଆଲୋଚନା ହୋଇଥିଲା, ସେଠାରେ ମଧ୍ୟ ସେହିପରି କିଛି ତର୍କ ଚାଲିଥିଲା । କିନ୍ତୁ ଆମର ରାତ୍ର ଭୋଜନ ପରର ଆଲୋଚନା ଗୁଡ଼ିକ ନିର୍ଣ୍ଣାୟକ ନ ଥିଲାବେଳେ ଏଠାରେ ଦେଖିଲି ସବୁଠାରେ ଆଲୋଚନା ଗୁଡ଼ିକ ନିର୍ଣ୍ଣାୟକ ଥିଲା । ସେମାନେ ନୂଆ ନୂଆ ବିଷୟ ଉତ୍‌ଥାପନ କରି ଆଲୋଚନା ଜାରି ରଖୁଥିଲେ ।

ମୋ ବନ୍ଧୁ ମୋତେ କହିଲେ, ''ଗୋପାଳ, ତୁମେ ଅନୁମାନ କରିପାରୁଛ ଏହା କେଉଁ ସ୍ଥାନ ?'' ନା, ମୁଁ ଜାଣି ପାରୁ ନାହିଁ ।

ଏହି ସ୍ଥାନଟି ମୁକ୍ତ ଚିନ୍ତକମାନଙ୍କର ସ୍ୱର୍ଗ । ଏଠାରେ ସବୁ କିଛି କରାଯାଇପାରେ । ଏଠାରେ କୌଣସି କଥା ନିଷେଧ ନାହିଁ । ଏଠାରେ କୌଣସି ବିଷୟ ଘୃଣ୍ୟ ନୁହେଁ । ଏଠାରେ ତୁମେ ରହିବ କି ?

ମୁଁ ଅନୁଭବ କଲି, ରହିବା ପାଇଁ ସ୍ଥାନଟି ଖରାପ ନୁହେଁ । ଏଠାରେ ଲୋକମାନଙ୍କର ମହାନ୍ ଭାବନା ପରିପ୍ରକାଶ ହୁଏ । ଏଠାରେ ରହିବା ପାଇଁ ମୁଁ 'ହଁ' କହିବାକୁ ଯାଉଥିଲି କିନ୍ତୁ, ଅଟକିଗଲି ଏବଂ ତାଙ୍କୁ ପଚାରିଲି, ''ଯଦି ଆଉ କୌଣସି ସ୍ଥାନ ଅଛି ମୋତେ ସେଠାକୁ ନେଇ ଚାଲ ।''












## ଗ୍ରୀସ୍‌ର ଦୁନିଆ



ମୁଁ ତାଙ୍କୁ ଏହି କଥା ପଚାରିବା ମାତ୍ରେ ଆମେ ଏକ ଅଭେଦ୍ୟ ପୁରାତନ ଦୁର୍ଗ ମଧ୍ୟକୁ ପ୍ରବେଶ କଲୁ । ଏହାର ଚତୁର୍ଦ୍ଦିଗରେ ଥିବା ପ୍ରାଚୀର କଡ଼ରେ ସଶସ୍ତ୍ର ସୈନିକମାନେ ଜଗି ରହିଥିଲେ । ଏହି ଦୁର୍ଗଟି ଏକ ଉପଦ୍ୱୀପ ଭଳି ଥିଲା ।

ସେଠାରେ ଏକ ଚମତ୍କାର ମନ୍ଦିର ଥିଲା । ଏହା ଏକ ଗ୍ରୀସୀୟ ମନ୍ଦିର ବୋଲି ମୋର ଦୃଢ଼ଧାରଣା ହେଲା । ମନ୍ଦିରର ପାହାଚରେ ଏକ କୁତ୍ସିତ ବୃଦ୍ଧବ୍ୟକ୍ତି ବସିଥିଲେ । କେତେକ ଦୀପ୍ତିମାନ ଯୁବକ ତାଙ୍କୁ ଘେରି ବସିଥିଲେ । ଜଣା ପଡୁଥିଲା ସେମାନେ କିଛି ଆଲୋଚନାରେ ବ୍ୟସ୍ତଥିଲେ । ଜଣେ ଆଲୋଚନା ଗୁଡ଼ିକୁ ଲେଖୁଥିଲା । ଆଃ ! ସେ ସକ୍ରେଟିସ୍ ! ଉପାସନା ଗୃହ ମଧ୍ୟରେ ଜଣେ ଦେବତା ଦଣ୍ଡାୟମାନ ହୋଇ ବୃଦ୍ଧଙ୍କ ଉପରେ କୃପା ଦୃଷ୍ଟି କଲା ଭଳି ଜଣା ପଡୁଥିଲେ । ସେ ଦେବତା ଥିଲେ ପ୍ରୋମିଥିୟସ୍ । ''ତୁମେ ଜାଣ, ତୁମେ ଏହି ଯୁବକମାନଙ୍କ ପରି ଜଣେ ହୋଇପାରିବ, କ'ଣ କହୁଛ ?'' ''ହଁ, କାହିଁକି ନୁହେଁ ? ସକ୍ରେଟିସ୍‌ଙ୍କର ଏହି ପବିତ୍ରଦଳରେ କିଏ ରହିବା ପାଇଁ ନ ଚାହିଁବ ?'' କିନ୍ତୁ ...

ମନ୍ଦିର ପଛପଟରେ ଏକ ବିରାଟ ଆଶ୍ଚର୍ଯ୍ୟଜନକ ଖେଳ ପଡ଼ିଆ ଥିଲା । ଯେଉଁଠି ସବୁପ୍ରକାର କ୍ରୀଡ଼ା ଚାଲିଥିଲା । ଷ୍ଟାଡ଼ିୟମ୍ କାନ୍ଥରେ ଏକ ବୋର୍ଡ଼ରେ ଲେଖାଥିଲା, 'ଅଲିମ୍ପିଆ' । ପୁନଶ୍ଚ ଦେଖିବାକୁ ପାଇଲି ମହାମହିମ ରାଜାମାନେ ନ୍ୟାୟୋଚିତ ଭାବରେ ଶାସନ କରୁଛନ୍ତି । ତାଙ୍କର ଦୁର୍ଦ୍ଧର୍ଷ ଛୋଟ ସୈନ୍ୟବାହିନୀର ନେତୃତ୍ୱ ନେଇ ଯୁଦ୍ଧକ୍ଷେତ୍ରକୁ ଆଗେଇ ଚାଲୁଥିଲେ ଏବଂ ତାଙ୍କର ସଂସ୍କୃତିକୁ ପୃଥିବୀର ଚତୁର୍ଦ୍ଦିଗକୁ ପ୍ରସାରିତ କରୁଥିଲେ ।

ସେଠାରେ ଏକ ପ୍ରଶସ୍ତ ପରିସର ଥିଲା ଏବଂ ଏକ ବୋର୍ଡ଼ରେ ଲେଖାଥିଲା 'ଏକାଡ଼େମିଆ' । ଯେଉଁଠି ଶିକ୍ଷାର ସମସ୍ତ ବିଷୟ, ଯଥା – ବିଜ୍ଞାନ, କଳା, ଗଣିତ, ଇତ୍ୟାଦି ଶିକ୍ଷା ଦିଆ ଯାଉଥିଲା ।

''ଗୋପାଳ, ତୁମେ କ'ଣ କହୁଛ ? ତୁମେ ଏଠାରେ ରହିବ ନା ଆଉଟିକିଏ ଆଗକୁ ଯିବ ?

ଗ୍ରୀସର ଏହି ଅତୀତ ଗୌରବ ଦେଖି ମୁଁ ଅତି ଆଶ୍ଚର୍ଯ୍ୟ ହୋଇ ଯାଇଥିଲି ଏବଂ ଭାବିଲି ଏହା ଠାରୁ ଆଉ କ'ଣ କିଛି ଭଲ ଥାଇପାରେ । ଯଦି କିଛି ଥାଏ ମୁଁ ନିଶ୍ଚୟ ଦେଖିବି ....

## ବିଜ୍ଞାନର ଦୁନିଆ

ମନ ଭିତରେ ମୁଁ ଏହି କଥା ଭାବୁ ଭାବୁ ଦେଖିଲି, ଆମେ ଜୈବ ବିଜ୍ଞାନାଗାରକୁ ଏକ ଗଳି ରାସ୍ତା ଦେଇ ଯାଉଛୁ, ଏବଂ ଖୁବ୍ ଶୀଘ୍ର ଆମେ ଏକ ଲମ୍ବା ଗଳିରେ ପ୍ରବେଶ କଲୁ ଯାହା ଏକ ପରୀକ୍ଷାଗାର ଭଳି










ଜଣାପଡୁଥିଲା । ଆମେ ଏକ ବିରାଟକାୟ ଗୃହ ମଧ୍ୟକୁ ପ୍ରବେଶ କଲୁ, ଗୃହଟି ଅନେକ ଯନ୍ତ୍ରପାତିରେ ପୂର୍ଣ୍ଣ ଥିଲା । ସେଠାରେ ମୋଟା କାଚର ଚଷମା ପିନ୍ଧିଥିବା ଅନେକ ଲୋକ ହଜାର ହଜାର ପ୍ରକାର କଥା ଆଲୋଚନା କରୁଥିଲେ । ଆଲୋଚନା ଗୁଡିକ - ବାୟୁଶାସ୍ତ୍ର (Cyclotrons), ଅନୁବଂଶ ବିଜ୍ଞାନ (Genetics), ପରିବେଶ ବିଜ୍ଞାନ (Enviornmental Science), ବ୍ଲାକ୍ ହୋଲ୍ (Blackhole), ଏବଂ କ୍ଲୋନ୍ ଇତ୍ୟାଦି ବିଷୟରେ ଥିଲା । ମୁଁ ଜାଣି ପାରିଲି ସେମାନେ ଆଧୁନିକ ବୈଜ୍ଞାନିକ ।

"ଗୋପାଳ, ତୁମର କିଛି ଧାରଣା ହେଉଛି କି ? ଏହା ମୁକ୍ତଚିନ୍ତକଙ୍କ ସ୍ୱର୍ଗ ଓ ଗ୍ରୀସ୍‌ର ମିଳନ ସ୍ଥଳ । ଏହାକୁ ବିଜ୍ଞାନର ଦୁନିଆ କୁହାଯାଏ । ଏଠାରେ ରହିବ କି ?"

ମୁଁ ଭାବିଲି ଖୁବ୍ ଆନନ୍ଦ ପ୍ରଦାୟକ ସ୍ଥାନ, କିନ୍ତୁ....

## ରୋମ୍‌ର ଦୁନିଆ






ଏକ ବିସ୍ତାରିତ ସହର, ଯେଉଁଠି ରାସ୍ତାଗୁଡ଼ିକ କୋଳାହଳ ପୂର୍ଣ୍ଣଥିଲା ଏବଂ ସମସ୍ତେ ବ୍ୟବସାୟରେ ବ୍ୟସ୍ତ ଥିଲେ । ପ୍ରତ୍ୟେକ ଘରେ ଗୀତ, ବାଦ୍ୟ ଓ ଆନନ୍ଦ ଉତ୍ସବ ଚାଲିଥିଲା । ଚାରିଆଡ଼ ସୁନା ଓ ରୂପାରେ ପୂର୍ଣ୍ଣଥିଲା । ପିଲାମାନଙ୍କର ମୁହଁ ଖୁବ୍ ସୁନ୍ଦର ଦିଶୁଥିଲା । ଲୋକମାନେ ରାଷ୍ଟ୍ରୀୟ ପରିଷଦ, ସୈନ୍ୟ ସାମନ୍ତ ଓ ଜଳଯାତ୍ରା ବିଷୟରେ ଆଲୋଚନା କରୁଥିଲେ । ସ୍ତ୍ରୀଲୋକମାନେ ଫେସନ୍, କଳା ସ୍ଥାପତ୍ୟ ଓ ମଲ୍ଲଯୁଦ୍ଧ ବିଷୟରେ ଆଲୋଚନା କରୁଥିଲେ । ଘରଗୁଡ଼ିକର ନିର୍ମାଣ ଶୈଳୀ ଉଚ୍ଚକୋଟୀର ଓ କଳାତ୍ମକ ଥିଲା ।

"ଗୋପାଳ, ଏ ସ୍ଥାନଟି କିପରି ଲାଗୁଛି ? ଏହା ପୁରାତନ ରୋମ୍ ସଭ୍ୟତା, ଆଧୁନିକ ୟୁରୋପର ଆତ୍ମା ।" "ହଁ, ମୋର କିନ୍ତୁ ଆଉ କିଛି ଦେଖିବାକୁ ଇଚ୍ଛା ..."










## ଇଜିପ୍ଟ୍‌ର ଦୁନିଆ






ଚାରିଆଡ ଗାଢ଼ ନୀଳ ଜଳରାଶି । ଏହା କ'ଣ ମହାସାଗର ? ନା, ପାଣି ଏଠାରେ ପ୍ରବାହିତ ହେଉଛି । ଏହା ଏକ ନଦୀ କିନ୍ତୁ ଅତି ବିରାଟ । ନଦୀ କୂଳରେ ଏକ ବିରାଟ ସହର ଦୃଷ୍ଟି ଗୋଚର ହେଲା । ଲୋକମାନେ ଦୃଢ଼ଭାବରେ ବସ୍ତ୍ରାବୃତ୍ତ ହୋଇ ରଙ୍ଗୀନ୍ ମସ୍ତକାବରଣ ପରିଧାନ କରିଥିଲେ । କେତେକ ଲୋକ ଅନ୍ୟ କେତେକ ଲୋକଙ୍କୁ ଚାବୁକରେ ପ୍ରହାର କରୁଥିଲେ । ଜଣାପଡୁଥିଲା କ୍ରୀତଦାସ ପ୍ରଥା ଏଠାରେ ପ୍ରଚଳିତ । ହଠାତ୍ ଆମେ ଦେଖିଲୁ ବଡ଼ ବଡ଼ ପଥର ଖଣ୍ଡକୁ ବଡ଼ ଇଟା ଭଳି କଟା ଯାଉଥିଲା, ଯେଉଁଗୁଡ଼ିକୁ ଶହ ଶହ ବଳିଷ୍ଠ କ୍ରୀତଦାସମାନେ ବିରାଟ ଢାଞ୍ଚା (Structure) ଉପରକୁ ବୋହି ନେଉଥିଲେ । ସେହି ଢାଞ୍ଚାଗୁଡ଼ିକ ଉପରେ ବୃହତ ପିରାମିଡ୍ ହେଲା । ସେଠାରେ ସୂର୍ଯ୍ୟ ଦେବତା, ଚନ୍ଦ୍ର ଦେବତା ଓ କେତେକ ପ୍ରକୃତି ଦେବତାଙ୍କର ଉପାସନା ସ୍ଥାନ ଥିଲା ।



"ଆଚ୍ଛା, ଏଠାରେ ରହିବାକୁ ତୁମକୁ କେମିତି ଲାଗୁଛି ? ଏହା ହେଉଛି ପୁରାତନ ଇଜିପ୍ଟ୍‌ର ମହାନ୍ ଦୁନିଆ । ଏହା ହେଉଛି ନୀଳ ନଦୀ । ଏ ଗୁଡ଼ିକ ଗିଜାର ପିରାମିଡ୍ ।"

ମୁଁ ନିଶ୍ଚିତ ହୋଇ ପାରିଲି ନାହିଁ, ଏଠାରେ ରହିବା ପାଇଁ ମୁଁ ଉପଯୁକ୍ତ କି ନା...










## ଇହୁଦୀମାନଙ୍କର ଦୁନିଆ






ଦୃଶ୍ୟଟି ଏକ ପୁରାତନ ସହରରେ ପରିଣତ ହେଲା ଏବଂ ଆମେ ବୃହତ୍ ପ୍ରାଚୀନ ମନ୍ଦିର ବାହାରେ ଠିଆ ହୋଇଥିଲୁ । ଜେରୁଜେଲମର ଡେଭିଡ୍ ମନ୍ଦିରରେ ଆମେ ଥିଲା ଭଳି ମୁଁ ଅନୁଭବ କଲି । ଜଣେ ବୃଦ୍ଧ ଯାହାଙ୍କର ଲମ୍ବା ଦାଢ଼ି ପବନରେ ଉଡୁଥିଲା, ସେ ତାଙ୍କ ହାତରେ ଦୁଇଟି ଛୋଟ ପଥର ଧରି ପାହାଡ଼ ଉପରେ ଠିଆ ହୋଇ ଥିଲେ ଏବଂ ଲୋକମାନଙ୍କ ସହ କଥା ହେଉଥିଲେ । ତାଙ୍କର ଚକ୍ଷୁ ଉଜ୍ଜ୍ୱଳ ଦିଶୁଥିଲା ଏବଂ ତାଙ୍କ ସ୍ୱର ଆବେଗଭରା ଥିଲା । ତାଙ୍କ ପଛପଟେ ଏକ ଜଳନ୍ତା ମସାଲ ଥିଲା । ମନ୍ଦିର ପରିସରରେ ପୃଥିବୀର ଅନ୍ତ ବିଷୟରେ କହୁଥିବା ଭବିଷ୍ୟବକ୍ତାମାନେ ଥିଲେ । ପୃଥିବୀର ପ୍ରଳୟ ଖୁବ୍ ଶୀଘ୍ର ହେବ ବୋଲି ସେମାନେ ପୂର୍ବାନୁମାନ କରୁଥିଲେ । ଅନ୍ୟତ୍ର, ମା ମାନେ ନବଜାତ ଶିଶୁମାନଙ୍କୁ ଆଶୀର୍ବାଦ କରିବା ପାଇଁ ବୃଦ୍ଧଙ୍କ ପାଖକୁ ନେଇ ଆସୁଥିଲେ । ମନ୍ଦିରରେ ଥିବା ଚଉପାଢ଼ୀ ଉପରେ ଅନେକ ବିଦ୍ୱାନ-ମହାପୁରୁଷ ନୈତିକ ଜୀବନ ଯାପନ କରିବା ପାଇଁ ଲୋକମାନଙ୍କୁ ଉପଦେଶ ଦେଉଥିଲେ । ମନ୍ଦିରର ଗର୍ଭଗୃହ ସାମ୍ନାରେ ନିରବଚ୍ଛିନ୍ନଭାବରେ ପଶୁମାନଙ୍କୁ ବଳି ଦିଆଯାଉଥିଲା । ଅନ୍ୟ କିଛି ସ୍ଥାନରେ ଲୋକମାନେ ବିଭିନ୍ନ ପ୍ରକାର ଆନନ୍ଦ ଉତ୍ସବ, ଯଥା – ରୋଶ୍ ହସ୍‌ନାହ, ୟୋମ୍ କିପୁର୍, ପାସ୍‌ଓଭର୍ ସେଡ଼େର୍ ଇତ୍ୟାଦି ପାଳନ କରୁଥିଲେ । ପରିବାରର ସମସ୍ତେ ସମସ୍ତଙ୍କର ହାତ ଧରା ଧରି ହୋଇ ଆନନ୍ଦ କରୁଥିଲେ ।

ବନ୍ଧୁ ପଚାରିଲେ, ''କ'ଣ ଗୋପାଳ ଏଠାରେ ରହିବ ?''

ଏପରି ସରଳ ଲୋକଙ୍କ ସାଙ୍ଗରେ ରହିଲେ ଖୁବ୍ ଭଲ ହେବ, କିନ୍ତୁ ...










## ଭଗବାନ ବୁଦ୍ଧଙ୍କ ଦୁନିଆ



ଦିବ୍ୟ ମୁଖମଣ୍ଡଳ ଥିବା ଜଣେ ସନ୍ୟାସୀ ମୋର ଦୃଷ୍ଟିଗୋଚର ହେଲେ । ସେହି ସନ୍ୟାସୀ ପ୍ରେମ, ଶାନ୍ତି ଓ ଅହିଂସା ବିତରଣ କରୁଥିଲେ । ମୁଁ ଦେଖିଲି ସେ ଚନ୍ଦନ କାଠରେ ଖୋଦିତ ଏକ ସୁଶୋଭିତ ଚକ୍ର ଗଡ଼ାଇଦେଲେ । ଚକ୍ରଟି ପୃଥିବୀର ଚତୁର୍ଦ୍ଦିଗରେ ଘୁରିବାକୁ ଲାଗିଲା । ଏହି ସନ୍ୟାସୀ ଯେଉଁଆଡ଼େ ଯାଉଥିଲେ ତାଙ୍କୁ ଲୋକମାନେ ଅନୁସରଣ କରୁଥିଲେ । ପୁରୁଷ ଓ ନାରୀମାନେ ସାଧୁ ଓ ସାଧ୍ୱୀ ହୋଇ ଯାଉଥିଲେ । ତାଙ୍କର ଯାଦୁକରି କଥା ଶୁଣି ଲୋକମାନେ ଗଭୀର ଧ୍ୟାନ ମଗ୍ନ ହୋଇ ଯାଉଥିଲେ । ସେ ଯାଉଥିବା ବାଟରେ ମରୁଭୂମିରେ ମଧ୍ୟ ସନ୍ୟାସୀ ଆଶ୍ରମମାନ ଗଢ଼ି ଉଠୁଥିଲା । ସବୁ ଗୁମ୍ଫା ଓ ଜଙ୍ଗଲ ସନ୍ୟାସୀ ଓ ସନ୍ୟାସିନୀଙ୍କ ଦ୍ୱାରା ପୂର୍ଣ୍ଣ ହୋଇଗଲା । ବଡ଼ ବଡ଼ ବିଶ୍ୱବିଦ୍ୟାଳୟମାନ ଗଢ଼ିଉଠିଲା ଯେଉଁଠି ଶିକ୍ଷାର ମାନ ଉଚ୍ଚକୋଟିର ଥିଲା । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା, ସନ୍ୟାସୀ ଏବଂ ସନ୍ୟାସିନୀମାନେ ପୃଥିବୀର ଚତୁର୍ଦ୍ଦିଗରେ ବୁଲି ବୁଲି ସବୁଦେଶର ଲୋକଙ୍କୁ–ଧର୍ମ ଏବଂ ସଂଘ, ଶାନ୍ତି ଏବଂ ପ୍ରେମ, ସେବା ଏବଂ ଅହିଂସା ବିଷୟରେ ଉପଦେଶ ଦେଉଥିଲେ । ନିର୍ଦ୍ଦୟ ରାଜା ଆଶୋକ ଯିଏ ନିର୍ମମ ଭାବରେ ଲକ୍ଷ ଲକ୍ଷ ଲୋକଙ୍କୁ ହତ୍ୟା କରିଥିଲେ, ଏହି ସନ୍ୟାସୀମାନଙ୍କ ମଧ୍ୟରୁ ଜଣଙ୍କ ସଙ୍ଗ ଲାଭ କରି ହିଂସାକୁ ସମ୍ପୂର୍ଣ୍ଣ ପରିତ୍ୟାଗ କରିଥିଲେ ।

ସାରା ବିଶ୍ୱ ଧର୍ମ, ଅହିଂସା, ସତ୍ୟ ଓ ନିର୍ବାଣର ସୁଗନ୍ଧରେ ଭରି ଯାଇଥିଲା । ସେହି ସନ୍ୟାସୀଙ୍କର ମୂର୍ତ୍ତି ଚାରିଆଡେ ସ୍ଥାପିତ ହେଲା ଏବଂ ସମସ୍ତେ ମୂର୍ତ୍ତିଗୁଡ଼ିକୁ ପୂଜା କଲେ । ଏହି ସନ୍ୟାସୀ ଏବଂ ତାଙ୍କର ବାଣୀକୁ ଆଧାର କରି କଳା ଏବଂ ଭାସ୍କର୍ଯ୍ୟର ବିକାଶ ଘଟିଲା ।

ସ୍ୱପ୍ନର ବନ୍ଧୁ – ଗୋପାଳ, ଏହା ହେଉଛି ବୁଦ୍ଧଙ୍କ ଦୁନିଆ ।

ଗୋପାଳ – ମୁଁ ଏହି ଦିବ୍ୟ ସଂଘରେ ସାମିଲ ହେବା ପାଇଁ ଭାଗ୍ୟବାନ ମନେ କରିବି । କିନ୍ତୁ, ଏହାଠାରୁ ଆଉ କିଛି ଅଧିକ ...

## ଖ୍ରୀଷ୍ଟଙ୍କ ଦୁନିଆ

ଆମେ ଦେଖିବାକୁ ପାଇଲୁ, ଦିବ୍ୟ ଓ ଉଜ୍ଜ୍ୱଳ ଚେହେରା, ଲମ୍ବା ଓ କ୍ଷୀଣ ଶରୀର ଥିବା ଜଣେ ଲୋକ ଆମ ଆଡ଼କୁ ପଛକରି ବସିଥିଲେ । ସେ ଗ୍ରାମବାସୀମାନଙ୍କୁ ଉପଦେଶ ଦେଉଥିଲେ । ଗ୍ରାମବାସୀମାନେ ଅତି ଆନନ୍ଦରେ ତାଙ୍କ କଥା ଶୁଣୁଥିଲେ । ସ୍ୱର୍ଗରାଜ୍ୟର ପିତା ଈଶ୍ୱରଙ୍କ ବିଷୟରେ ସେ କହୁଥିଲେ । ଅନ୍ୟସ୍ଥାନରେ ଦେଖିବାକୁ ପାଇଲୁ ସେହି ବ୍ୟକ୍ତି ଏକ ଲମ୍ବା ପୋଷାକ ପିନ୍ଧିଥିଲେ ଏବଂ ରୋଗୀମାନଙ୍କର ଉପଚାର କରି













ଭଲ କରିଦେଉଥିଲେ । ଅତି ଶୀଘ୍ର ଆମେ ଦେଖିବାକୁ ପାଇଲୁ, ତାଙ୍କୁ କ୍ରୁଶବିଦ୍ଧ କରାଗଲା । ନଦୀର ବନ୍ୟାଜଳ ଭୂମିକୁ ପ୍ଲାବିତ କଲା ଭଳି ତାଙ୍କ କ୍ଷତ ସ୍ଥାନରୁ କରୁଣାର ଧାରା ସାରା ବିଶ୍ୱକୁ ପ୍ଲାବିତ କଲା ।

କଠିନ ତପଚର୍ଯ୍ୟା କରୁଥିବା ସନ୍ନ୍ୟାସୀମାନଙ୍କ ଦ୍ୱାରା ଇଜିପ୍ଟ୍‌ର ମରୁଭୂମିଟି ପୂର୍ଣ୍ଣ ଥିଲା । ଶୀଘ୍ର, ଏହି ମରୁଭୂମିଟି ବିରାଟ ବିରାଟ ଆଶ୍ରମରେ ପୂର୍ଣ୍ଣ ହୋଇଗଲା । ଏହି ସନ୍ନ୍ୟାସୀଙ୍କ ଆଶ୍ରମ କ୍ରମେ କ୍ରମେ ପୃଥିବୀର ସବୁଆଡେ ସ୍ଥାପିତ ହେଲା । ଯେତେବେଳେ ମୁଁ ଦିଗ୍‌ବଳୟକୁ ଚାହିଁଲି, ଦେଖିବାକୁ ପାଇଲି, ସେହି ପତଳା ଦିବ୍ୟପୁରୁଷଙ୍କ ସାଙ୍ଗରେ ଥିବା ଦୁଇଜଣ ବ୍ୟକ୍ତି ଅନ୍ୟ ଦୁଇଟି ସଂସ୍କୃତିକୁ ଧର୍ମ ଉପଦେଶ ଦେଉଥିଲେ । ଜଣେ ଇହୁଦୀମାନଙ୍କ ସାଙ୍ଗରେ ଓ ଅନ୍ୟଜଣେ ରୋମାନ୍‌ମାନଙ୍କ ସାଙ୍ଗରେ ଥିଲେ । ଧୀରେ ଧୀରେ ରୋମ୍‌ର ଦୃଶ୍ୟ ବଦଳିଗଲା ଏବଂ ବିରାଟ ବିରାଟ ଗୀର୍ଜା ସବୁଆଡ଼େ ସ୍ଥାପିତ ହେଲା ।



ଭୂମିରେ ଏକ ଅଦ୍ଭୁତ ପୁସ୍ତକ ଦେଖିଲି । ଏହାର ପ୍ରଥମ ଭାଗରେ ଇହୁଦୀମାନଙ୍କ ଦୁନିଆ ଓ ଅନ୍ୟ ଏକ ଅଜଣା ଦୁନିଆ ବିଷୟରେ ବର୍ଣ୍ଣନା ଥିଲା । ଦ୍ୱିତୀୟ ଭାଗଟିରେ ଗୀର୍ଜାର ସ୍ଥାପନ ବିଷୟରେ ବର୍ଣ୍ଣନା ଥିଲା ।

ସବୁଆଡ଼େ ଲୋକମାନେ ବିଭିନ୍ନ ବିଷୟ ଯଥା : ତ୍ରିଶକ୍ତି, ପବିତ୍ର ଆତ୍ମା, ଦୀକ୍ଷା, ଅଯୋନି ସମ୍ଭୁତା, ପ୍ରଭୁଙ୍କର ଏକମାତ୍ର ପୁତ୍ର, ପବିତ୍ରତା ଓ ତ୍ରାଣକର୍ତ୍ତା ବିଷୟରେ କଥାବାର୍ତ୍ତା ହେଉଥିଲେ । ବିଶାଳ ଜନସ୍ରୋତ ଗ୍ରାଣ୍ଡ୍ ସେଣ୍ଟ୍ ପିଟର୍ ଗୀର୍ଜା ଭିତରେ ଥିବାର ମୁଁ ଦେଖିବାକୁ ପାଇଲି । ସେମାନେ କହୁଥିଲେ, ଇଭ୍ ମାରିଆ, ହଲେଲୁଯାହା ଏବଂ ଯେଶସ୍ କ୍ରାଏଷ୍ଟ, ଆମ ଉପରେ ଦୟା ରଖ । ଗୋଟିଏ କୋଣରେ ମୁଁ 'ମାର୍ଟିନ୍ ଲୁଥର' ନାମ ଲେଖାଥିବା ଏକ ଫଳକ ଲଗାଇଥିବା ଜଣେ ଯୁବକକୁ ଦେଖିଲି । ସେ ନିଜ ପାଖରେ ବହୁତ ଲୋକଙ୍କୁ ଏକାଠି କରିଥିଲେ । ସେହି ଲୋକମାନଙ୍କୁ ସେ ସେଣ୍ଟ୍ ପୀଟର୍‌ଙ୍କ ମନ୍ଦିରରୁ ଟାଣି ଟାଣି ପ୍ରଥମେ ଶୂଳିରେ ଚଢ଼ା ହୋଇଥିବା ସାଧୁଙ୍କ ପାଖକୁ ନେଇଯିବା ପାଇଁ ଚେଷ୍ଟା କରୁଥିଲେ । ମୁଁ ବୁଝିଗଲି ଯେ ସେ ଚର୍ଚ୍ଚ ର ବିରୋଧ କରି ଲୋକମାନଙ୍କୁ ସଂସ୍କାର କରିବା ପାଇଁ ଚେଷ୍ଟା କରୁଥିଲେ ।

ମୋ ବନ୍ଧୁ କହିଲେ, ''କ'ଣ ଗୋପାଳ ?'' 'ଏଠାରେ ରହିବା ପାଇଁ ମୋର ମନ ଅଛି, କିନ୍ତୁ ....'

## ଇସଲାମ୍‌ଙ୍କ ଦୁନିଆ

ଦୃଶ୍ୟଟି ଧୂଳିରେ ଅନ୍ଧକାରାଛନ୍ନ ହୋଇଗଲା । ଲକ୍ଷ ଲକ୍ଷ ଘୋଡ଼ାମାନଙ୍କ ଟାପୁରେ ପୃଥିବୀ କମ୍ପିବାକୁ ଲାଗିଲା ଏବଂ 'ଦୀନ୍ ଦୀନ୍'' ''ଜେହାଦ୍..., ଜେହାଦ୍....'' ଶବ୍ଦରେ ବାୟୁ ମଣ୍ଡଳ ପ୍ରକମ୍ପିତ ହେଲା । ଚକ୍ଷୁରେ ଅଦମ୍ୟ ଉତ୍ସାହ ଏବଂ ହୃଦୟରେ ଅସାଧାରଣ ବ୍ୟଗ୍ରତା । ଶହ ଶହ ଅସ୍ତ୍ର ଶସ୍ତ୍ର ଧାରୀ ସୈନିକମାନେ ଦୀନ୍ ବାର୍ତ୍ତା ଲୋକମାନଙ୍କ ପାଖରେ ପହଞ୍ଚାଇବା ପାଇଁ ଆତୁର ଥିଲେ ।













ଗୋଟିଏ ମନୋରମ କଳାରଙ୍ଗର ପଥର ଉପରେ ଘନନୀଳ ମଲାଟ ଥିବା ଏକ ପୁସ୍ତକ ଦେଖିଲି । ସେହି କଳାପଥର ମଧ୍ୟରୁ ଏହି ଯୋଦ୍ଧାମାନେ ବାହାରୁଥିଲେ । ଏହି ପୁସ୍ତକର ପ୍ରଥମ ଭାଗ ମୁଁ ଦେଖିଥିବା ଖ୍ରୀଷ୍ଟଙ୍କ ଦୁନିଆ ନିକଟରୁ ବିସ୍ତାରିତ ଥିଲା । ଏହି ପଥରର ପାର୍ଶ୍ୱରେ ଜଣେ ଦିବ୍ୟପୁରୁଷ ଦଣ୍ଡାୟମାନ ହୋଇଥିଲେ । ସେ ସବୁଜ ଢିଲା ପୋଷାକ ପରିଧାନ କରିଥିଲେ ଏବଂ ତାଙ୍କ ମୁହଁରେ ଦିବ୍ୟ ହସଥିଲା । ତାଙ୍କ ମୁଖ ମଣ୍ଡଳରୁ ଦିବ୍ୟ ଜ୍ୟୋତି ପ୍ରକାଶ ପାଉଥିଲା । ଯୋଦ୍ଧାମାନେ ଲକ୍ଷ ଲକ୍ଷ ଲୋକଙ୍କୁ ଏହି ଦିବ୍ୟପୁରୁଷଙ୍କ ପାଖକୁ ଆଣୁଥିଲେ । ଭଗବାନଙ୍କର ଆଜ୍ଞାକାରୀ ହେବା, ମନୁଷ୍ୟମାନଙ୍କ ମଧ୍ୟରେ ଥିବା ସମାନତା ଓ ଶ୍ରମର ମହିମା ଇତ୍ୟାଦି ବିଷୟରେ ସେ ସେମାନଙ୍କୁ ଶିକ୍ଷା ଦେଉଥିଲେ ।

ବନ୍ଧୁ – ଏହି ବୃଦ୍ଧ ବ୍ୟକ୍ତି ହେଉଛନ୍ତି ଅବତାର ମହମ୍ମଦ୍ ।

ଗୋପାଳ – ମୁଁ ଏଠାରେ ରହିବି, କିନ୍ତୁ ...

## କନ୍‌ଫ୍ୟୁଶିୟସ୍‌ଙ୍କର ଜଗତ

"ଯେ କୌଣସି ଭୌତିକ ବସ୍ତୁ ଅଛି, ତାହା ସବୁ ପବିତ୍ର । ମଣିଷ ହେବା ପାଇଁ ଚେଷ୍ଟା କର, ପରେ ତୁମେ ଈଶ୍ୱର ହୋଇପାରିବ...।" ଖୋଲା ଆକାଶରୁ ମୁଁ ଏହି ଶବ୍ଦ ଶୁଣିଲି । ଧୀରେ ଧୀରେ ଦୃଶ୍ୟ ସ୍ପଷ୍ଟରୁ ସ୍ପଷ୍ଟତର ହେଲା ଏବଂ ଏହି ଶବ୍ଦ ଉଚ୍ଚାରଣ କରୁଥିବା ଏକ ଭବ୍ୟ ମୁହଁ ମୁଁ ଦେଖିଲି । ଏହା ଜଣେ ମଂଗୋଲିଆବାସୀଙ୍କର ମୁହଁ ଥିଲା ।

ମୋ ବନ୍ଧୁ କହିଲେ, "ଗୋପାଳ ! ଏ ବ୍ୟକ୍ତି ଜଣକ ହେଉଛନ୍ତି କନ୍‌ଫ୍ୟୁଶିୟସ୍ ।" ମୁଁ ପ୍ରତ୍ୟେକ ସ୍ଥାନରେ ଦେଖିଲି ସାଧାରଣ ମଣିଷ ମଧ୍ୟ ଅତ୍ୟନ୍ତ ନୈତିକବାନ ଥିଲେ । ସେମାନଙ୍କର ବ୍ୟବହାରରେ ଶିଷ୍ଟତା ଥିଲା, ସେମାନେ କୁଶଳୀ ଏବଂ ହେତୁବାଦୀ ଥିଲେ । ମଣିଷମାନେ ସେମାନଙ୍କ ସନ୍ତାନମାନଙ୍କର ଉନ୍ନତି ପାଇଁ ସର୍ବଦା ତତ୍ପର ଥିଲେ । ସବୁ ସ୍ଥାନରେ ଦେଖିଲି କର୍ମନିଷ୍ଠା ଏବଂ କେହି ନିଜର ପ୍ରାପ୍ୟ ମାଗିବା କଥା କହୁ ନ ଥିଲେ ।

ସେଠାରେ ଥିବା ଗଳିଗୁଡ଼ିକର କୋଣରେ ଦୃଷ୍ଟିଗୋଚର ହେଉଥିବା ସୂଚନା ଫଳକ ଲଗାହୋଇ-ଥିଲା । ସେଠାରେ ସ୍ପଷ୍ଟ ଅକ୍ଷରରେ ଲେଖାଥିଲା, ସମାଜ ପାଞ୍ଚଜଣଙ୍କ ସଂପର୍କ ଉପରେ ତିଷ୍ଠି ରହିଛି :

୧) ପିତା–ପୁତ୍ର ମଧ୍ୟରେ ଥିବା ପ୍ରେମ ।
୨) ଶାସକ ଏବଂ ପ୍ରଜାଙ୍କ ମଧ୍ୟରେ ଥିବା କର୍ତ୍ତବ୍ୟ ।
୩) ପତି ଏବଂ ପତ୍ନୀଙ୍କ ମଧ୍ୟରେ ଥିବା କର୍ତ୍ତବ୍ୟ ।
୪) ଯୁବକଙ୍କ ଅପେକ୍ଷା ବୃଦ୍ଧମାନଙ୍କର ଅଗ୍ରଗଣ୍ୟତା ।
୫) ମିତ୍ର–ମିତ୍ର ମଧ୍ୟରେ ଥିବା ବିଶ୍ୱାସ ।

ମୋର ସ୍ୱପ୍ନର ବନ୍ଧୁ କହିଲେ : କ'ଣ ? ଗୋପାଳ, ଏ ବିଷୟରେ ତୁମର ଧାରଣା କ'ଣ ?

ମୁଁ କହିଲି : ଏଭଳି ନୀତିବାନ ମଣିଷଙ୍କ ମଧ୍ୟରେ ରହିବାକୁ କାହାକୁ ଅବା ଭଲ ନ ଲାଗିବ ! କିନ୍ତୁ ...

## ସନାତନ ଧର୍ମର ଦୁନିଆ

ଆମେ ଧୀରେ ଧୀରେ ଏକ ମନୋରମ ଭୂମିରେ ପହଞ୍ଚିଲୁ । ସ୍ଥାନଟି ନଦୀ, ଝରଣା, ପାହାଡ଼, ପର୍ବତ ଓ ସମତଳ ଭୂମିରେ ପରିପୂର୍ଣ୍ଣ । କସ୍ତୁରୀ, ଚନ୍ଦନ ଓ ପଦ୍ମଫୁଲର ସୁଗନ୍ଧରେ ସେ ସ୍ଥାନଟି ମହକି ଉଠୁଥିଲା । ବ୍ରାହ୍ମଣମାନଙ୍କର ବେଦ ମନ୍ତ୍ର ଉଚ୍ଚାରଣ ପୃଥିବୀକୁ ପୁଲକିତ କରୁଥିଲା ।











ଏହି ଭୂମିରେ ମୁଁ ସବୁ ଦୁନିଆର ବୈଶିଷ୍ଟ୍ୟ ଦେଖିବାକୁ ପାଇଲି । ବିମୋହିତ ହୋଇ ଏହି ଦୃଶ୍ୟ ଦେଖୁଥିବା ସମୟରେ ହଠାତ୍ ମୋର ବନ୍ଧୁ ଦିଗ୍‌ବଳୟ ଆଡ଼କୁ ଚାହିଁବାକୁ ନିର୍ଦ୍ଦେଶ ଦେଲେ । ମୁଁ ଦେଖିଲି ଏହି ଭୂମିଟି ଗୋଟିଏ ଜୀବନ୍ତ ପ୍ରାଣୀରେ ପରିବର୍ତ୍ତନ ହୋଇଗଲା ଏବଂ ଏହା ସ୍ପନ୍ଦିତ ହେଉଥିଲା । ସେ ନିଜର ଜୀବନୀ-ଶକ୍ତିକୁ ଏକ ନିର୍ଦ୍ଦିଷ୍ଟ ଅନ୍ତରାଳରେ ଅନ୍ୟ ଦୁନିଆକୁ ବିତରଣ କରୁଥିଲା । ସବୁ ଦୁନିଆର ଜୀବନଧାରା ଏଠାରୁ ଆରମ୍ଭ ହୋଇଥିଲା । ସବୁ ଦୁନିଆର ସୁନାରୂପା, ବିକାଶ ଓ କୀର୍ତ୍ତି ଏଠାରୁ ମିଳିଥିଲା । ଜଣା ପଡୁଥିଲା ଏହି ଦୁନିଆ ହିଁ ସବୁ ଦୁନିଆର ଜନନୀ । ଦେବଦୂତ ପରି ମୁନି-ଋଷିମାନେ ଜଙ୍ଗଲରେ ସବୁଆଡ଼େ ରହୁଥିଲେ । ଏହି ମୁନି-ଋଷିମାନଙ୍କ ମଧ୍ୟରେ ଜଣେ ଉଜ୍ଜ୍ୱଳ ମୁଖମଣ୍ଡଳ ଥିବା ମୁନିଙ୍କୁ ମୁଁ ଦେଖିବାକୁ ପାଇଲି, ଯାହାଙ୍କୁ ମୁଁ ଅନ୍ୟ ଏକ ଦୁନିଆରେ ପୂର୍ବରୁ ଦେଖିଥିଲି ।

ସେ ଗୋଟିଏ ବୋଧିବୃକ୍ଷ ତଳେ ବସିଥିଲେ । ସେ ଉଠିଲା ବେଳେ ତାଙ୍କ ମୁଖମଣ୍ଡଳରୁ ଏକ ଉଜ୍ଜ୍ୱଳ ଆଲୋକ ପ୍ରକାଶିତ ହୋଉଥିଲା । ମୁଁ ଦେଖିଲି ଧୀରେ ଧୀରେ ସେ ଏବଂ ତାଙ୍କର ଉପଦେଶ ଏହି ଦୁନିଆରୁ ବିଚ୍ଛିନ୍ନ ହୋଇଗଲା ଏବଂ ଆକାଶରେ ଲୀନ ହୋଇଗଲା । ମୁଁ ବୁଝିପାରିଲି ସେ ଅନ୍ୟ କେଉଁଠି ଏକ ଦୁନିଆ ଗଠନ କରିଥିଲେ, ଯାହା ମୁଁ ପୂର୍ବରୁ ଦେଖିଥିଲି । ଏହା ନିଶ୍ଚିତ ଯେ ଏହି ଦୁନିଆ ସବୁ ଦୁନିଆର ସଙ୍ଗମସ୍ଥଳ । ଗୋଟିଏ ସ୍ଥାନରେ ଜଣେ ଯଶସ୍ୱୀ ଗୋପାଳ ବାଳକକୁ ଦେଖିଲି । ସେ ମୁଣ୍ଡରେ ମୟୂର ଚନ୍ଦ୍ରିକା ଧାରଣ କରିଥିଲେ । ଲକ୍ଷ ଲକ୍ଷ ଯୋଦ୍ଧା ଯୁଦ୍ଧ କରୁଥିବା ଯୁଦ୍ଧକ୍ଷେତ୍ରରେ ସେ ରଥ ଚଳାଉଥିଲେ । ଅସଂଖ୍ୟ ଲୋକ ତାଙ୍କ ପାଖକୁ ଆସୁଥିଲେ । ସେମାନଙ୍କ ମଧ୍ୟରୁ କେତେକ ଭକ୍ତି ଭାବ ଓ କେତେକ କର୍ମ ଭାବ ଓ କେତେକ ଜ୍ଞାନ ଭାବ ନେଇ ଆସୁଥିଲେ । କିନ୍ତୁ ସମସ୍ତେ ତାଙ୍କ ଦେହରେ ଲୀନ ହୋଇ ଯାଉଥିଲେ ।







ଅନ୍ୟ ଏକ ସ୍ଥାନରେ ଜଣେ ଯୁବ ସନ୍ନ୍ୟାସୀଙ୍କୁ ଦେଖିଲି ଯାହାଙ୍କର ଚକ୍ଷୁ ଦ୍ୱୟ ଅନ୍ଧାର ରାତିର ତାରା ଭଳି ଜଣାପଡୁଥିଲା । ସେ ଏହି ଭୂମିରେ ସବୁଆଡ଼େ ଭ୍ରମଣ କରି ଦାର୍ଶନିକ ତତ୍ତ୍ୱରେ ହଜାର ହଜାର ଜ୍ଞାନୀ ଲୋକଙ୍କୁ ପରାସ୍ତ କରିଥିଲେ । ଏହି ଦୁନିଆର ଚାରିକୋଣରେ ଯେଉଁଠି ତାଙ୍କ ପାଦ ପଡ଼ିଛି, ସେଠାରେ ବଡ଼ ବଡ଼ ମଠମାନ ଗଢ଼ି ଉଠିଛି । ସେ ହେଉଛନ୍ତି- 'ଶଙ୍କରାଚାର୍ଯ୍ୟ' ।

ଅନ୍ୟ ଏକ ସ୍ଥାନରେ ଅତ୍ୟନ୍ତ ଉଜ୍ଜ୍ୱଳ ଗୌରବର୍ଣ୍ଣର ଶରୀର ଧାରଣ କରିଥିବା ଜଣେ ବ୍ୟକ୍ତିଙ୍କୁ ଦେଖିଲି । ସେ ରାସ୍ତାରେ ମଧୁର ସଂଗୀତ ଗାନ କରି, ମହାନନ୍ଦରେ ନାଚି ନାଚି ଯାଉଥିଲେ । ଏ ହେଉଛନ୍ତି -'ଚୈତନ୍ୟ ମହାପ୍ରଭୁ' ।












ଦିଗବଳୟ ଅନ୍ତର୍ଦ୍ଧାନ ହୋଇଗଲା ଏବଂ ପୁନଶ୍ଚ ଦୀନ୍, ଦୀନ୍‌ର ସ୍ୱର ଶୁଣାଗଲା । ବଡ଼ ବଡ଼ ମସଜିଦ୍, ସୁସଜ୍ଜିତ ମହଲ ଏବଂ ବିରାଟକାୟ କିଲ୍ଲାମାନ ଗଢ଼ିଉଠିଲା ।

ହଜାର ହଜାର ଜାହାଜ, ନୌକା ଏବଂ ସୈନିକମାନେ ଆସି ଏହାର କୂଳରେ ପହଞ୍ଚିଲେ । ହଜାର ହଜାର ଗୌରବର୍ଣ୍ଣ ପୁରୁଷ ଓ ନାରୀ ଚମଡ଼ା ଜୋତା ଓ ସୁନ୍ଦର ପୋଷାକ ପିନ୍ଧି ଏହି ଦୁନିଆର ସବୁଆଡ଼େ ବିଚରଣ କଲେ ଏବଂ ଲକ୍ଷ ଲକ୍ଷ ଲୋକଙ୍କ ଦେହରେ ବେଡ଼ି ପଡ଼ିଲା । ଏହାପରେ ସାଙ୍ଗେ ସାଙ୍ଗେ ବନ୍ଦୀରୁ ମୁକ୍ତି ଲାଭ କରିବା ପାଇଁ ସଂଗ୍ରାମ ଚାଲିଲା ।

### ପୂର୍ଣ୍ଣାଙ୍ଗ ଦୃଷ୍ଟି – ୧

ଚାରି ଜଣ ଅନ୍ଧ ଗୋଟିଏ ହାତୀ ଦେଖିବାକୁ ଗଲେ । ଜଣେ ହାତୀର ଗୋଡ଼ ସ୍ପର୍ଶ କରି କହିଲା, ହାତୀଟି ଦେଖିବାକୁ ଖୁଣ୍ଟପରି । ଦ୍ୱିତୀୟ ଜଣକ ଶୁଣ୍ଢକୁ ସ୍ପର୍ଶକରି କହିଲା, ହାତୀ ଗୋଟିଏ ଛୋଟ କାଠ ଗଣ୍ଡି ପରି । ତୃତୀୟ ଜଣକ ହାତୀର ପେଟକୁ ସ୍ପର୍ଶକଲା ଏବଂ କହିଲା, ହାତୀଟି ଗୋଟିଏ ବଡ଼ କୁଣ୍ଡ ପରି । ଚତୁର୍ଥ ଜଣକ ହାତୀର କାନ ସ୍ପର୍ଶକଲା ଏବଂ କହିଲା, ହାତୀଟି ଦେଖିବାକୁ ଗୋଟିଏ କୁଲାପରି । ଏହିପରି ସେମାନେ କୁହାକୁହି ହୋଇ ନିଜ ନିଜ ମଧ୍ୟରେ କଳି ଗୋଳ କରିବା ଆରମ୍ଭ କରିଦେଲେ । ଜଣେ ପଥିକ ଏମାନଙ୍କର ଝଗଡ଼ା ଦେଖି ଏହାର କାରଣ ସେମାନଙ୍କୁ ପଚାରିଲେ, ସେମାନେ ପଥିକଙ୍କୁ ସମସ୍ତ କଥା କହି ଏହାର ସମାଧାନ କରିବା ପାଇଁ ଅନୁରୋଧ କଲେ । ପଥିକ ଜଣକ କହିଲେ, ତୁମେ କେହି ହାତୀକୁ ଠିକ୍ ଭାବରେ ଦେଖି ନାହଁ । ପ୍ରକୃତରେ ହାତୀଟି ଖମ୍ବଭଳି ନୁହେଁ, ଏହାର ଗୋଡ଼ଟି ଖମ୍ବପରି, ହାତୀଟି ଗୋଟିଏ ଛୋଟ କାଠ ଗଣ୍ଡିପରି ନୁହେଁ, ଏହାର ଶୁଣ୍ଢଟି ଛୋଟ କାଠ ଗଣ୍ଡିପରି, ହାତୀଟି ଗୋଟିଏ କୁଲାପରି ନୁହେଁ, ଏହାର କାନ କୁଲାପରି, ହାତୀଟି ଗୋଟିଏ କୁଣ୍ଡ ପରି ନୁହେଁ, ଏହାର ପେଟଟି କୁଣ୍ଡ ପରି । ଏଗୁଡ଼ିକ ହାତୀର ଗୋଟିଏ ଗୋଟିଏ ଅଙ୍ଗ ମାତ୍ର ।




ଏହାପରେ ଦ୍ରୁତ ଭାବରେ କାର୍ ଏବଂ କମ୍ପ୍ୟୁଟର୍, ନଦୀବନ୍ଧ ଏବଂ କଳକାରଖାନା, ମୋବାଇଲ୍ ଫୋନ୍ ଏବଂ ଲାପ୍‌ଟପ୍ ପ୍ରଭୃତିରେ ଏହି ଦୁନିଆ ପୂର୍ଣ୍ଣ ହୋଇ-ଗଲା ।

ବନ୍ଧୁ କହିଲେ, ଗୋପାଳ, ଏ ହେଉଛି ସନାତନ ଧର୍ମର ଦୁନିଆ । ସବୁ ଦୁନିଆର ଏକତ୍ରିକରଣ ଏହିଠାରେ ହୋଇଛି । ଗୋପାଳ କହିଲା, ବର୍ତ୍ତମାନ ମୋ ମନରେ ନୂତନ ଚିନ୍ତାଧାରା ଜାଗ୍ରତ ହେଲା । ମୁଁ ବାସ୍ତବରେ ଅନେକ ସ୍ଥାନ ଦେଖିଲି । ସେହି ସ୍ଥାନ ମୋ ମନରେ ନିଶ୍ଚିତ ଭାବରେ ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ସ୍ଥାପନ କଲା । ସେହି ବୈଶିଷ୍ଟ୍ୟଗୁଡ଼ିକ ମୋତେ ସେହି ସ୍ଥାନମାନଙ୍କରେ ରହିବାକୁ ଆକୃଷ୍ଟ କରିଥିଲା । ପ୍ରତ୍ୟେକ ସ୍ଥାନର ବହୁ ପ୍ରକାର ବୈଶିଷ୍ଟ୍ୟ ଥିଲା । କିନ୍ତୁ ମୁଁ ଯେଉଁପ୍ରକାର ବୈଶିଷ୍ଟ୍ୟ ଚାହୁଁଥିଲି ସେହି ଦୁନିଆମାନଙ୍କରେ ଏହା ନ ଥିଲା । ସେହି ବୈଶିଷ୍ଟ୍ୟ ଜାଣିବାପାଇଁ ଅନ୍ୟ ଏକ ନୂଆ ଦୁନିଆର ଭାବନା ମୋ ମନରେ ଆସୁଥିଲା । ଭାବିଲି, ଏହି ଦୁନିଆଗୁଡ଼ିକ ଅପେକ୍ଷା ଯେଉଁଠି ସବୁଠାରୁ ଭଲ ବୈଶିଷ୍ଟ୍ୟ ଥିବ, ଯେଉଁଠି କୌଣସି ଅପ୍ରୀତିକର ଭାବ ନ ଥିବ ମୁଁ ସେହିଠାରେ ରହିବି । ମୋ ବନ୍ଧୁଙ୍କୁ ପଚାରିଲି ଏପରି କିଛି ସ୍ଥାନ ଅଛି.....

ହଠାତ୍ ମୁଁ ଅନୁଭବ କଲି, ଆମକୁ ବହୁ ଉପରକୁ ଫିଙ୍ଗି ଦିଆଗଲା ଏବଂ ଆମେ ଏକ ଅସାଧାରଣ ସୁବିଧା ଥିବା ସ୍ଥାନରେ ପହଞ୍ଚିଲୁ । ଲକ୍ଷ ଲକ୍ଷ ଦୁନିଆ ଏଠାରେ ଦୃଶ୍ୟମାନ ହେଲା । ଆମ ଚତୁଃପାର୍ଶ୍ୱରେ ଏକ ସମ୍ପୂର୍ଣ୍ଣ ନୂଆ ଦୁନିଆ ସୃଷ୍ଟି ହୋଇଗଲା । ଯେଉଁଠି ସବୁ










ଦୁନିଆର ସବୁଠାରୁ ଭଲ ବୈଶିଷ୍ଟ୍ୟ ଗୁଡ଼ିକ ରହିଥିଲା ! ଆଖି ପିଛୁଳାକେ ଏହା ସବୁ ଘଟିଗଲା ! ମୁଁ ଆଶ୍ଚର୍ଯ୍ୟ ହେଲି, ମୁଁ ଗୋଟିଏ ନିର୍ଦ୍ଦିଷ୍ଟ ଦୁନିଆରେ ଥିଲା ବେଳେ, ଅନ୍ୟ ଦୁନିଆକୁ ଦେଖି ପାରୁ ନଥିଲି । ଅନ୍ୟ ଏକ ଆଶ୍ଚର୍ଯ୍ୟ କଥା ହେଲା – ଲକ୍ଷ ଲକ୍ଷ ଦୁନିଆକୁ ଏହି ଦୁନିଆରୁ ଏକ ତେଜପୂର୍ଣ୍ଣ ରାସ୍ତା ସଂଯୋଗ କରୁଥିଲା । ସତେ ଯେପରି ଜଣାପଡୁଥିଲା ଏହି ନୂଆ ଦୁନିଆରୁ ଅନ୍ୟ ଦୁନିଆକୁ ଏବଂ ଅନ୍ୟ ଦୁନିଆରୁ ଏହି ଦୁନିଆକୁ ସମସ୍ତେ ପ୍ରବେଶ କରି ପାରିବେ । ଏହି ଦୁନିଆ ସବୁ ଦୁନିଆର କେନ୍ଦ୍ରସ୍ଥଳ ।

ହଠାତ୍ ମୁଁ ଅନୁଭବ କଲି, ଏହି ଅପରିଚିତ ସ୍ୱପ୍ନର ବନ୍ଧୁ କିଏ ଯାହା ସାଙ୍ଗରେ ମୁଁ ଏତେ ସମୟ ଧରି ଭ୍ରମଣ କଲି । ସେ ଖୁବ୍ ଦୟାଳୁ ଏବଂ ବିଚାରବନ୍ତ ଥିଲେ । ଜଣା ପଡୁଥିଲା ସେ ମୋ ଅନ୍ତରର ଭାବନାକୁ ଜାଣି ପାରୁଥିଲେ । ସେ କିଏ ? ମୁଁ ତାଙ୍କ ମୁହଁକୁ ଚାହିଁବା ମାତ୍ରକେ ମୋ ଦେହରେ ଏକ ଶିହରଣ ଖେଳିଗଲା । ହେ ଭଗବାନ ! ମୁଁ ଦେଖିଥିବା କୃଷ୍ଣ, ସକ୍ରେଟିସ୍, ମୋଜେସ୍, ଯୀଶୁ, ବୁଦ୍ଧ, କନ୍‌ଫ୍ୟୁସିଅସ୍, ମହମ୍ମଦ୍, ମାର୍ଟିନ୍ ଲୁଥର, ମୁନିଋଷିମାନେ ଏବଂ ଲକ୍ଷ ଲକ୍ଷ ଦୁନିଆର ନିଆରା ଲକ୍ଷ ଲକ୍ଷ ଦେବଦେବୀ ସମସ୍ତେ ଏକ ସଙ୍ଗରେ ଏହି ବନ୍ଧୁଙ୍କ ମଧ୍ୟରେ ଥିଲେ । ମନୁଷ୍ୟ ଓ ଦେବତା ମାନଙ୍କର ସେ ଥିଲେ କେଲିଡ଼ୋସ୍କୋପ (ରଙ୍ଗ ପରିବର୍ତ୍ତନକାରୀ ଯନ୍ତ୍ର) ! ମୁଁ ତାଙ୍କୁ ପଚାରିଲି, ବନ୍ଧୁ, ଆପଣ କିଏ ? ସେ କୌତୁହଳି ହୋଇ ହସିଲେ ଏବଂ କହିଲେ, ଅନୁମାନ କର ମୁଁ କିଏ ? ଏହା କହି ସେ ବିରାଟ ରୂପ ଧାରଣ କଲେ ଏବଂ ତାଙ୍କର ଶରୀର ସମସ୍ତ ଦୁନିଆ ଏବଂ ଦିଗବଳୟକୁ ବ୍ୟାପିଗଲା । ଯେଉଁ ବନ୍ଧୁ ମୋ ସାଙ୍ଗରେ ପ୍ରଥମରୁ ରହିଥିଲେ ସେ ବର୍ତ୍ତମାନ ସୀମାହୀନ ହୋଇଗଲେ । ମୁଁ ତାଙ୍କ ସହିତ କଥା କହିବା କିମ୍ବା ତାଙ୍କୁ ସ୍ପର୍ଶ କରିବା ପାଇଁ ଅସମର୍ଥ ହେଲି, କାରଣ ସେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ରେ ନ ରହି ସର୍ବବ୍ୟାପୀ ହୋଇଗଲେ ।




ବର୍ତ୍ତମାନ ଏହି ନୂତନ ଦୁନିଆ ବିଷୟରେ ବହୁ ନୂତନ ତଥ୍ୟ ମୋର ବିଦ୍ୟମାନ ହେଲା । ମୁଁ ଦେଖିଲି ସବୁ ଦୁନିଆର ଲୋକମାନେ ଅନେକ ରାସ୍ତା ଦେଇ ଏହି ଦୁନିଆରେ ପ୍ରବେଶ କରୁଥିଲେ । ସମସ୍ତେ ନିଜ ନିଜ ଭାଷାରେ କଥା ହେଉଥିଲେ । କିନ୍ତୁ ସମସ୍ତେ ସମସ୍ତଙ୍କ ଭାବନାକୁ ବୁଝିପାରୁଥିଲେ ।

### ପୂର୍ଣ୍ଣାଙ୍ଗ ଦୃଷ୍ଟି – ୨

ଥରେ ଜଣେ ଲୋକ ଜଙ୍ଗଲକୁ ଯାଇଥିଲା, ସେଠାରେ ସେ ଏକ ପ୍ରାଣୀକୁ ଗଛରେ ବସିଥିବାର ଦେଖିଲା । ସେ ଲୋକଟି ଫେରିଆସି ଅନ୍ୟ ଜଣେ ଲୋକକୁ କହିଲା, 'ଗୋଟିଏ ସୁନ୍ଦର ନାଲି ରଙ୍ଗର ପ୍ରାଣୀ ଗଛରେ ବସିଥିବାର ମୁଁ ଦେଖିଲି ।' ଏହା ଶୁଣି ସେହି ଲୋକଟି କହିଲା, ମୁଁ ଯେତେବେଳେ ଜଙ୍ଗଲକୁ ଯାଇଥିଲି, ମୁଁ ମଧ୍ୟ ସେହି ପ୍ରାଣୀଟିକୁ ଦେଖିଥିଲି, କିନ୍ତୁ ତୁମେ ଏହାକୁ ନାଲି କାହିଁକି କହୁଛ ? ଏହା ତ ସବୁଜ । ଅନ୍ୟ ଜଣେ ଏହି ଦୁଇଜଣଙ୍କ କଥାକୁ ବିରୋଧ କରି କହିଲା, 'ତୁମେ ଦୁଇଜଣ ଭୁଲ କହୁଛ, ମୁଁ ଦେଖିଛି ଏହି ପ୍ରାଣୀଟି ହଳଦିଆ ।' ଏହିପରି ଅନେକ ଲୋକ ସେଠାରେ ପହଞ୍ଚି ପ୍ରାଣୀଟିର ରଙ୍ଗ ଧୂସର, ଘନନୀଳ, କଳା ଇତ୍ୟାଦି କହିଲେ । ଶେଷରେ ସେମାନେ ନିଜ ନିଜ ମଧ୍ୟରେ ଝଗଡ଼ା ଆରମ୍ଭ କରିଦେଲେ । ଏହାର ସତ୍ୟତା ଜାଣିବା ପାଇଁ ସମସ୍ତେ ସେହି ଗଛ ପାଖକୁ ଗଲେ । ଗଛ ତଳେ ଜଣେ ବୃଦ୍ଧ ବ୍ୟକ୍ତି ବସିଥିବାର ସେମାନେ ଦେଖିଲେ । ବୃଦ୍ଧ ବ୍ୟକ୍ତିଙ୍କୁ ଏହି ପ୍ରାଣୀ ବିଷୟରେ ସେମାନେ ପଚାରିଲେ, 'ଏହା କିପରି ସମ୍ଭବ ?' ବୃଦ୍ଧ ଉତ୍ତର ଦେଲେ, 'ପ୍ରାଣୀଟି ତା ଇଚ୍ଛା ଅନୁସାରେ ତା ରଙ୍ଗ ବଦଳାଇପାରେ । ଏହା ତା'ର ବୈଶିଷ୍ଟ୍ୟ । କିନ୍ତୁ ମୁଁ ଦେଖିଛି ଏହା ରଙ୍ଗ ହୀନ !'











ନିରବଚ୍ଛିନ୍ନ ଭାବରେ ଓଁ କାରର ଶାଶ୍ୱତ ଧ୍ୱନି ବାୟୁମଣ୍ଡଳକୁ ପ୍ରକମ୍ପିତ କରୁଥିଲା ଏବଂ ଏହି ଧ୍ୱନି ବିଭିନ୍ନ ସଭ୍ୟତା ଓ ସଂସ୍କୃତି ମଧ୍ୟରେ ବୁଝାମଣା କରିବା ନିମନ୍ତେ ସହାୟକ ହେଉଥିଲା ।

ମୁଁ ଗବେଷଣା କରୁଥିବା କେତେକ ଲୋକଙ୍କ ପାଖକୁ ଗଲି ଏବଂ ଦେଖିଲି ବିଭିନ୍ନ ଦୁନିଆର ଲୋକ ସେଠାରେ ଥିଲେ । ସେମାନେ ଏହି ଦୁନିଆର ମୂଳଭିତ୍ତି ବିଷୟରେ ଜାଣିବାକୁ ଚାହୁଁଥିଲେ । ମୁଁ ଭାବିଲି, ଇଲେକ୍ଟ୍ରନ୍, ପ୍ରୋଟନ୍, ନିୟୁଟ୍ରନ୍ ଓ କ୍ୱାର୍କ ବ୍ୟତୀତ ଏହା ଆଉ କ'ଣ ହୋଇପାରେ ? କିଛି ସମୟ ପରେ ସେ ଏକ ତଥ୍ୟ ଆବିଷ୍କାର କଲେ ଯେ ଏହି ଦୁନିଆର ମୂଳଭିତ୍ତି ହେଉଛି କେତେକ ଅବିଶ୍ୱସନୀୟ ଶକ୍ତିର ଧାରଣା ମାତ୍ର । ଏହି ଧାରଣା ଗୁଡ଼ିକ ହେଲା – ସାହାଯ୍ୟ କର ସଂଘର୍ଷ କର ନାହିଁ, ସମାହିତ କର ଧ୍ୱଂସ କର ନାହିଁ, ସମଭାବ ଏବଂ ଶାନ୍ତି ରକ୍ଷା କର, ବିଷମତା କର ନାହିଁ, ଯେତେ ମତ ସେତେ ପଥ, ପ୍ରତ୍ୟେକ ଆତ୍ମା ଦିବ୍ୟ ସ୍ୱରୂପ ଏବଂ ଯେତେଦିନ ବଞ୍ଚିବ ସେତେଦିନ ଶିକ୍ଷାଲାଭ କରିବ ।



ମୁଁ ମୋ ବନ୍ଧୁଙ୍କ ସହ କିଛି କଥା ହେବା ପାଇଁ ଆବଶ୍ୟକତା ମନେ କଲି । ହଠାତ୍, ମୁଁ ତାଙ୍କୁ ମୋ ପାଖରେ ଦେଖିଲି । ତାଙ୍କୁ ପଚାରିଲି, ମୁଁ ଏଠାରେ ରହିପାରିବି କି ? ସେ ଆଶୀର୍ବାଦପୂର୍ବକ ସମ୍ମତି ପ୍ରକାଶ କଲେ । ମୁଁ ତାଙ୍କୁ ଏହି ଦୁନିଆର ନାମ ପଚାରିଲି, ସେ କହିଲେ, "ଏହା ସର୍ବବ୍ୟାପକତାର ଦୁନିଆ ।" କି ଆଶ୍ଚର୍ଯ୍ୟ ନାମ ! ଏହାର ଅନ୍ୟ କିଛି ଅର୍ଥ ଅଛି କି ? "ଏହାର ଅର୍ଥ ସବୁ କିଛି ସମସ୍ତଙ୍କ ପାଇଁ ।" ତଥାପି ମୁଁ ଜାଣି ପାରୁନାହିଁ, ଆପଣ କିଏ ? ଆପଣ କାହିଁକି ଏଭଳି ରହସ୍ୟମୟ ? ଆପଣ କାହିଁକି ଆପଣଙ୍କ ପରିଚୟ ଦେଉ ନାହାଁନ୍ତି ?

ଏହା ମୁଁ ଏତେ ଜୋରରେ କହିଲି ଯେ – ହଠାତ୍ ମୋର ନିଦ ଭାଙ୍ଗିଗଲା ଏବଂ ମୋର ସ୍ୱପ୍ନ ଶେଷ ହୋଇଗଲା... ମୁଁ ମୋ ବିଛଣାରୁ ଉଠି ପଡ଼ିଲି ।

### ପ୍ରୟୋଜନୀୟ କର୍ତ୍ତବ୍ୟ

ପ୍ରତ୍ୟେକ ପ୍ରାଣୀ ଭିତରେ ଦିବ୍ୟତା ସୁପ୍ତ ଅବସ୍ଥାରେ ଅଛି । ବାହ୍ୟ ଓ ଅନ୍ତଃ ପ୍ରକୃତିକୁ ନିୟନ୍ତ୍ରଣ କରି ଅନ୍ତର୍ନିହିତ ଶକ୍ତିର ପ୍ରକାଶ କରିବା ଆମର ଲକ୍ଷ୍ୟ । କର୍ମ ଅଥବା ଉପାସନା, କିମ୍ବା ଆତ୍ମସଂଯମ ଅଥବା ଦର୍ଶନ ଶାସ୍ତ୍ର ଇତ୍ୟାଦି ମଧ୍ୟରୁ ଏକ କିମ୍ବା ଏକାଧିକ କିମ୍ବା ସବୁ ଦ୍ୱାରା ଏହି ଅନ୍ତର୍ନିହିତ ଶକ୍ତିକୁ ପ୍ରକାଶ କର ଏବଂ ମୁକ୍ତ ହୋଇଯାଅ । ଏହା ହେଉଛି ଧର୍ମର ଗୂଢ଼ ରହସ୍ୟ । ଧାର୍ମିକ ବିଶ୍ୱାସ ବା ଧାର୍ମିକ ମତବାଦ ବା ବିଧିବିଧାନ ବା ପୁସ୍ତକ ବା ମନ୍ଦିର ବା ଦେବଦେବୀ, ଏହା ଗୌଣ ଅଙ୍ଗ ପ୍ରତ୍ୟଙ୍ଗ ମାତ୍ର ।

– ସ୍ୱାମୀ ବିବେକାନନ୍ଦ

### ଧର୍ମ

ଆମେ ଜନ ସମାଜକୁ ଏପରି ଏକ ସ୍ଥାନକୁ ନେବାକୁ ଚାହୁଁଛୁ, ଯେଉଁଠି ବେଦ ନଥିବ କିମ୍ବା ବାଇବେଲ ନଥିବ, କିମ୍ବା କୋରାନ୍ ନଥିବ, ତଥାପି ବେଦ, ବାଇବେଲ ଓ କୋରାନ୍ ମଧ୍ୟରେ ଐକ୍ୟ ସ୍ଥାପନ କରି ଏପରି ସ୍ଥାନ କରାଯାଇପାରେ । ଜନ ସମାଜକୁ ଏହା ଶିକ୍ଷା ଦେବା ଉଚିତ ଯେ ଧର୍ମଗୁଡ଼ିକ ହେଉଛନ୍ତି ଗୋଟିଏ ଧର୍ମର ଭିନ୍ନ ପରିପ୍ରକାଶ ମାତ୍ର, ଯାହା ହେଉଛି ଏକତ୍ୱ । ତେଣୁ ପ୍ରତ୍ୟେକ ବ୍ୟକ୍ତି ନିଜ ନିଜ ଇଚ୍ଛାନୁସାରେ ନିଜର ନିଜର ପଥ ବାଛି ପାରିବେ ।

– ସ୍ୱାମୀ ବିବେକାନନ୍ଦ









# ଉତ୍କଳ ଗୌରବ ମଧୁସୂଦନ



ଉତ୍କଳ ଗୌରବ ମଧୁସୂଦନ ଦାସ ୧୮୪୮ ମସିହା ଏପ୍ରିଲ୍ ୨୮ ତାରିଖରେ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଓ ମାତାଙ୍କ ନାମ ପାର୍ବତୀ ଦେବୀ । ପ୍ରଭୁ ଯୀଶୁ ଶୁଳିରେ ଚଢ଼ିବାକୁ ଯାଉଥିବା ସମୟରେ କହିଥିବା ମର୍ମସ୍ପର୍ଶୀ ଅନ୍ତିମ ବାକ୍ୟଟି ତାଙ୍କ ପ୍ରାଣକୁ ଭଲଭାବରେ ସ୍ପର୍ଶ କରିଥିଲା (ପିତା ସେମାନଙ୍କୁ କ୍ଷମା ଦିଅ, ସେମାନେ କ'ଣ କରୁଛନ୍ତି ସେମାନଙ୍କୁ ଜଣା ନାହିଁ ) । ସେ ୧୮୬୯ ମସିହାରେ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ ହୋଇଥିଲେ । କଲିକତାରେ ସେ ତାଙ୍କର ପ୍ରିୟ ପତ୍ନୀଙ୍କୁ ହରାଇଥିଲେ କିନ୍ତୁ ସେ ଦ୍ୱିତୀୟ ବିବାହ କରି ନ ଥିଲେ । ମାନବ ସେବା ଓ ଦେଶ ସେବା ଥିଲା ତାଙ୍କ ଜୀବନର ଏକ ମାତ୍ର ଲକ୍ଷ୍ୟ ।

ପୁରୀ ରାଜାଙ୍କ ମକଦ୍ଦମାରେ ଜୟଯୁକ୍ତ ହୋଇଥିବାରୁ ମଧୁସୂଦନଙ୍କୁ ବିଶେଷ ସମ୍ମାନ ଦିଆଯାଇଥିଲା । ଥରେ ତାଙ୍କର ବୃଦ୍ଧା ମାତା ପୁରୀ ମନ୍ଦିରକୁ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଯାଇଥିଲେ । ସେଦିନ ତାଙ୍କୁ ସମ୍ମାନ ଜଣାଇବା ଉଦ୍ଦେଶ୍ୟରେ ମନ୍ଦିର ମଧ୍ୟରୁ ସମସ୍ତ ଭକ୍ତମାନଙ୍କୁ ବାହାରକୁ ଚାଲିଯିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ବୃଦ୍ଧା ପାର୍ବତୀ ଦେବୀ ମହାପ୍ରଭୁଙ୍କୁ ନିର୍ବିଘ୍ନରେ ଦର୍ଶନ ଲାଭ କରିବାର ସୁଯୋଗ ପାଇଥିଲେ ।

ଲୋକମାନଙ୍କ ମନରେ ଜାଗରଣ ସୃଷ୍ଟି କରିବା ପାଇଁ 'ଉତ୍କଳ ସନ୍ତାନ' ପଦ୍ୟରେ ମଧୁବାବୁ ଲେଖିଥିଲେ –

ତୁ ମନେ ଭାବିଛୁ    ତୋଷାମଦ କରି<br>
    ବଢ଼ାଇବୁ ଜାତି ମାନ,<br>
ତୋଷାମୋଦିଆର    କୁକୁର ପ୍ରକୃତି<br>
    ଅଇଁଠା ପତ୍ରରେ ଧ୍ୟାନ ।<br>
ତୋଷାମୋଦକାରୀ    କ୍ଷିପ୍ତ ଶ୍ୱାନପରି<br>
    ସହଜେ ଚିହ୍ନା ନ ଯାଏ,<br>
ଭୃତ୍ୟ ଭାବ ଧରି    ଗୋଡ଼ ଚାଟୁ ଚାଟୁ<br>
    ବିଷ ଲେପି ଦେଇ ଯାଏ ।

ଜାତିର ଉନ୍ନତି    ହେବ କିରେ ଭାଇ<br>
    ସ୍ୱାର୍ଥକୁ ଜଗତ ମଣି,<br>
ଗୋଦର ଗୋଡ଼ରେ    ମାଉଁସ ଲାଗିଲେ<br>
    ଦେହର କି ଶୁଭ ଗଣି ?<br>
ଜାତିର ଉନ୍ନତି    ସେ କାହିଁ କରିବ<br>
    ସ୍ୱାର୍ଥେ ଯାର ବ୍ୟସ୍ତ ମନ,<br>
ଶାଗୁଣା ବିଲୁଆ    ଚିକିତ୍ସକ ହେଲେ<br>
    ଶବ କି ପାଇବ ପ୍ରାଣ ?

ମଧୁସୂଦନ ଦାସ କଲିକତାରେ ଅବତାର ପୁରୁଷ ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସଙ୍କର ଦର୍ଶନ ଲାଭ କରିଥିଲେ । [1]

Ref. [1] The man and his mission; by Brajabandhu Dash. (Page 131)

## ଗପସପ-୫

# ଓଡ଼ିଶାର ସ୍ୱନାମ ଧନ୍ୟ ମନୀଷୀ


ଶହୀଦ୍ ଜୟିରାଜଗୁରୁ


କୁନ୍ତଳା କୁମାରୀ ସାବତ


ମାଳତୀ ଚୌଧୁରୀ


ରମାଦେବୀ


ଶହୀଦ୍ ବିର୍ସା ମୁଣ୍ଡା


ପଣ୍ଡିତ ନୀଳକଣ୍ଠ ଦାସ


କବିସୂର୍ଯ୍ୟ ବଳଦେବ ରଥ


ଫକିର ମୋହନ ସେନାପତି


ଭୀମ ଭୋଇ


ଆଦି କବି ଶାରଳା ଦାସ


ପ୍ରକୃତି କବି ଗଙ୍ଗାଧର ମେହେର


ଭକ୍ତ କବି ମଧୁସୁଦନ ରାଓ


ହରେକୃଷ୍ଣ ମହତାବ


ରାଧାନାଥ ରଥ


ନେତାଜୀ ସୁଭାଷ ବୋଷ


ଶହୀଦ୍ ବୀର ସୁରେନ୍ଦ୍ର ସାଏ


ଶହୀଦ୍ ବାଜି ରାଉତ୍


ବକ୍ସି ଜଗବନ୍ଧୁ


ଶହୀଦ୍ ଲକ୍ଷ୍ମଣ ନାୟକ


କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ

ଶିକ୍ଷକମାନଙ୍କର ସାହାଯ୍ୟ ନେଇ ଏହି ମହାପୁରୁଷମାନଙ୍କ ବିଷୟରେ କିଛି କିଛି ଲେଖନ୍ତୁ ।

### ଗପସପ ୪ର ଉତ୍ତର –

ଭାରତର ରାଜ୍ୟ ସଂଖ୍ୟା – ୨୯
କେନ୍ଦ୍ର ଶାସିତ ଅଞ୍ଚଳ – ୭
ଅବଦୁଲ୍ କଲାମ୍‌ଙ୍କ ପୂରା ନାମ – ଡକ୍ଟର ଅବୁଲ ପକିର ଜୟିନୁଲାବ୍ଦିନ୍ ଅବଦୁଲ୍ କଲାମ୍
ଭାରତୀୟ ସେନାବାହିନୀର ମୂଖ୍ୟ – ଭାରତର ରାଷ୍ଟ୍ରପତି
ରାଜ୍ୟସଭାର ସଭାପତି – ଉପରାଷ୍ଟ୍ରପତି



''ଉତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ନିବୋଧତ'' – ଉଠ, ଜାଗ, ଯେତେଦିନ ଯାଏ ସେହି ଅଭିଳଷିତ ବସ୍ତୁ ପ୍ରାପ୍ତ ନ ହୋଇଛି, ସେତେ ଦିନ ଯାଏ ପ୍ରବଳ ଉଦ୍ୟମ, ଅସୀମ ଚେଷ୍ଟା କରିବାରୁ ବିରତ ହୁଅ ନାହିଁ ।

– ସ୍ୱାମୀ ବିବେକାନନ୍ଦ

# ପରିଶିଷ୍ଟ

## ଦ୍ୱିତୀୟ ଅଧ୍ୟାୟ ପାଇଁ ପରିଶିଷ୍ଟ

(ନିମ୍ନଲିଖିତ ପ୍ରବନ୍ଧଟି ରାମକୃଷ୍ଣ ସଂଘ ଦ୍ୱାରା ପ୍ରକାଶିତ ମାସିକ ଇଂରାଜୀ ପତ୍ରିକା ପ୍ରବୁଦ୍ଧ ଭାରତର ମାର୍ଚ୍ଚ ୨୦୧୩ ସଂଖ୍ୟାରେ ପ୍ରକାଶିତ, ଅଲିମ୍ପିକ୍ ସ୍ୱର୍ଣ୍ଣ ପଦକଧାରୀ ବନ୍ଧୁକ ଚାଳକ ଅଭିନବ ବିନ୍ଦ୍ରାଙ୍କ ଦ୍ୱାରା ପ୍ରଦତ୍ତ ଏକ ବକ୍ତୃତା ।)

### ସଫଳତାର ଅନ୍ୱେଷଣ

**ଅଭିନବ ବିନ୍ଦ୍ରା**

ସ୍ୱାମୀ ବିବେକାନନ୍ଦଙ୍କର ଅବଦାନ ସାରା ବିଶ୍ୱ ପରିପ୍ରେକ୍ଷିରେ ପ୍ରାସଙ୍ଗିକ । ସେ ଭାରତକୁ ଆଧୁନିକ ବିଶ୍ୱ ସହିତ ଏବଂ ଆଧୁନିକ ବିଶ୍ୱକୁ ଭାରତ ସହିତ ପରିଚୟ କରାଇଲେ । ସେ ଭାରତକୁ କେବଳ ହାତୀ, ସାପୁଆକେଳା, ରାଜା, ରାଣୀ, ଦାରିଦ୍ର୍ୟ ଇତ୍ୟାଦିର ଦେଶ ଭାବରେ ପରିଚିତ କରାଇ ନ ଥିଲେ, ମାତ୍ର ଭାରତକୁ ଅଗାଧ ଜ୍ଞାନୀ, ଗଭୀର ଗୁଢ଼ ଆଧ୍ୟାତ୍ମିକ ଏବଂ ଉନ୍ନତ ଦାର୍ଶନିକ ଦେଶ ଭାବରେ ପରିଚିତ କରାଇଥିଲେ ।

ତେଣୁ ଜଣେ ଅଲିମ୍ପିକ୍ ସ୍ୱର୍ଣ୍ଣପଦକ ବିଜୟୀ ବନ୍ଧୁକ ଚାଳକ ସ୍ୱାମୀ ବିବେକାନନ୍ଦଙ୍କ ବିଷୟରେ କ'ଣ କହିବେ ?

ମୁଁ ଏଠାରେ ମୋ କଥା ଆପଣମାନଙ୍କୁ କହିବା ପାଇଁ ଉପସ୍ଥିତ । ଦର୍ଶାଇଦେବାକୁ ଚାହେଁ ଯେ ଲକ୍ଷ୍ୟ ଯାହା ହେଉନା କାହିଁକି, କେବଳ ଗୋଟିଏ ଉପାୟରେ ସଫଳତା ଆସେ । ଏହି ଉପାୟ ପାଇଁ ସ୍ୱାମୀଜୀଙ୍କର ଚିରନ୍ତନ ସତ୍ୟର ସାରାଂଶ ହେଲା : **'ଗୋଟିଏ ଆଦର୍ଶକୁ ଆପଣାଅ ! ସେହି ଆଦର୍ଶକୁ ଜୀବନରେ ଲଗାଅ–ଏହାକୁ ଚିନ୍ତନ କର, ସ୍ୱପ୍ନ ଦେଖ ଏବଂ ଏହି ଆଦର୍ଶକୁ ନେଇ ବଞ୍ଚ । ତୁମର ମସ୍ତିଷ୍କ, ମାଂସପେଶି, ସ୍ନାୟୁ, ଶରୀରର ପ୍ରତ୍ୟେକ ଅଂଶ ଏହି ଆଦର୍ଶରେ ପୂର୍ଣ୍ଣ ହେଉ, ଏବଂ ଅନ୍ୟ ସମସ୍ତ ଆଦର୍ଶକୁ ପରିତ୍ୟାଗ କର । ସଫଳତାର ଏହା ମୂଳ ଉପାୟ ।'**[1]

ମୋତେ ତେର ବର୍ଷ ବୟସ ହୋଇଥିଲା ବେଳେ ଅଲିମ୍ପିକ୍ କ୍ରୀଡ଼ାରେ ସ୍ୱର୍ଣ୍ଣପଦକ ଜିତିବା ପାଇଁ ମୁଁ ପ୍ରଥମେ ସ୍ୱପ୍ନ ଦେଖିଥିଲି । ଏପରିକି ସେତେବେଳେ ଏହି ସ୍ୱପ୍ନ ସମ୍ପୂର୍ଣ୍ଣ ବିକଶିତ ହୋଇ ନ ଥିଲା । ଏହା ଏକ ଭାବନା ଥିଲା କିନ୍ତୁ ମୋ ଜୀବନରେ ଏହି ଭାବନା ପରେ ଏକ ଶକ୍ତିଶାଳୀ ଭାବନାରେ ପରିଣତ ହେଲା । ଏହାର ଚଉଦବର୍ଷ ପରେ ବେଜିଙ୍ଗ୍ ଅଲିମ୍ପିକ୍,୨୦୦୮ରେ ମୁଁ ସ୍ୱର୍ଣ୍ଣ ପଦକ ଜିତିଲି । ମୋ ସଫଳତା ପାଇଁ ଅନେକ ଗୁରୁତ୍ୱପୂର୍ଣ୍ଣ ଘଟଣା ଏବଂ ଜନସାଧାରଣ ସହାୟତା ଯୋଗାଇଥିଲେ, କିନ୍ତୁ ଯଦି ମୁଁ ସ୍ୱାମୀଜୀଙ୍କ ଉପରୋକ୍ତ କଥାକୁ ମୋ ଜୀବନରେ ପାଳନ କରି ନ ଥାନ୍ତି, ଏ ସବୁ ମୋତେ ପଦକ ଜିତିବାରେ ସହାୟତା ଯୋଗାଇ ପାରି ନ ଥାନ୍ତେ । ଯଦି ମୁଁ ଏହି ଧାରଣାକୁ ନେଇ ସ୍ୱପ୍ନ ଦେଖି ନ ଥାନ୍ତି, ଏହାକୁ ନେଇ ବଞ୍ଚି ନ ଥାନ୍ତି, ମୋର ଶରୀରର ସମସ୍ତ ଅଂଶ ଏବଂ ଶରୀର ବାହାରର ଅଂଶ ଯଥା–ମୋର ପୋଷାକ, ମୋର ଖେଳ ସାମଗ୍ରୀ ପ୍ରଭୃତିରେ ଏହି ଧାରଣାକୁ ପୂର୍ଣ୍ଣ କରି ନ ଥାନ୍ତି ତେବେ ମୁଁ ଅଲିମ୍ପିକ୍ ସ୍ୱର୍ଣ୍ଣ ପଦକ ଜିତିବାରେ ସମର୍ଥ ହୋଇ ନ ଥାନ୍ତି ।

ବିଜୟ ଲାଭ କରିବା ଆମ ସମସ୍ତଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ କିନ୍ତୁ ଏହା ଆମର ଜନ୍ମଗତ ଅଧିକାର ନୁହେଁ । ଯେତେବେଳେ ତୁମେ କିଛି ପାଇବା ପାଇଁ ତୀବ୍ର ଇଚ୍ଛା କରୁଛ, ତୁମେ ନିଜକୁ ନିଜେ କହିବା ଉଚିତ୍ : 'ଏହି ଭାବନାରେ ମୋ ମସ୍ତିଷ୍କ ପୂର୍ଣ୍ଣ ହେଉ ଏବଂ ତା'ପରେ ମୁଁ ପାଇବି ।' ଶେଷରେ ଦିନେ ତୁମେ ନିଶ୍ଚିତ ଜିତିବ ଏବଂ ତୁମେ ଯେତେବେଳେ ଜିତିବ, ତୁମେ ଆଗରୁ ଚିନ୍ତା କରି ନ ଥିବା କଥାକୁ ଅନୁଭବ କରିବ: ଜିତିବା ସଫଳତା ନୁହେଁ। ମୋତେ ଏହା ବୁଝାଇବାକୁ ଦିଅ । ୧୮୯୩ ମସିହା ବିଶ୍ୱଧର୍ମ ସମ୍ମିଳନୀରେ ସନାତନଧର୍ମର ପ୍ରତିନିଧିତ୍ୱ କରିବା ପାଇଁ ସ୍ୱାମୀଜୀ ଚିକାଗୋରେ ପହଞ୍ଚିଲେ ଏବଂ ଜିତିଲେ । ସେ ଜିତିଲେ କାରଣ ସେ ଯୁକ୍ତ ରାଷ୍ଟ୍ର ଆମେରିକାରେ ପହଞ୍ଚିବା ପାଇଁ ଭୀଷଣ ପ୍ରତିବନ୍ଧକ ଗୁଡ଼ିକୁ ପ୍ରଥମେ ଅତିକ୍ରମ କରିଥିଲେ । ସେଠାରେ ପହଞ୍ଚି ସେ ଅନୁଭବ କଲେ ଜଣେ ପ୍ରତିନିଧି ହିସାବରେ ତାଙ୍କୁ ଅନୁମତି ମିଳିବ ନାହିଁ ଯଦି ସେ କୌଣସି ସଂସ୍ଥା ନିକଟରୁ ନିଜର ପରିଚୟ ପତ୍ର ନ ପାଆନ୍ତି । ସେ ହାବାର୍ଡ଼ ବିଶ୍ୱବିଦ୍ୟାଳୟର ପ୍ରଫେସର ଜନ୍ ହେନ୍ରି ରାଇଟ୍‌ଙ୍କୁ ଭେଟିଲେ, ଯିଏ ତାଙ୍କ କଥା ଶୁଣି ବିଶେଷ ଭାବରେ ପ୍ରଭାବିତ ହୋଇଗଲେ ଏବଂ ଜାଣିବାକୁ ପାଇଲେ ସ୍ୱାମୀଜୀଙ୍କର ଚିକାଗୋ ଧର୍ମ ସଭାରେ ଯୋଗଦେବା ପାଇଁ ପରିଚୟ ପତ୍ର ନାହିଁ । ରାଇଟ୍ କହିଥିଲେ, 'ସ୍ୱାମୀଜୀ, ଆପଣଙ୍କୁ ପରିଚୟ ମାଗିବା ଅର୍ଥ ସୂର୍ଯ୍ୟର ଆଲୋକ ପ୍ରଦାନ କରିବାର ଅଧିକାର ଅଛି କି ନାହିଁ ପଚାରିବା ସଙ୍ଗେ ସମାନ ।' [2]

ସମାଜକୁ ପରିଚାଳିତ କରୁଥିବା ଶକ୍ତି ହେଲା– ଅମଲାତନ୍ତ୍ର, ଲାଲଫିତା, ପ୍ରଶାସନ, କିମ୍ବା ଅନ୍ୟ କିଛି ପଦ୍ଧତି। ମୋତେ କୁହ : 'ମନେକର ଆପଣ ଗୋଟିଏ ସ୍ୱର୍ଣ୍ଣପଦକ ଲାଭ କଲେ : ଆପଣ ବିଶ୍ୱରେ ଏକ ସୁଖ୍ୟାତି ସ୍ଥାପନ କରିଛନ୍ତି; ହଁ, ଆପଣ ଅଲିମ୍ପିକ୍ ବିଜେତା ହୋଇଛନ୍ତି କିନ୍ତୁ ଆପଣ ପ୍ରତିଯୋଗିତାକୁ ଆସିବା ପୂର୍ବରୁ ଅନେକ ପରୀକ୍ଷାରେ ଅଂଶଗ୍ରହଣ କରିଥିବେ ।' କାରଣ ଏହି ଚୟନ ପ୍ରଣାଳୀକୁ ମାନିବାକୁ ହେବ, ଆପଣ କିଛି ପରୀକ୍ଷାରେ ଅଂଶଗ୍ରହଣ କରିବେ ଏବଂ ସେମାନେ ଆପଣଙ୍କ ସାମର୍ଥ୍ୟକୁ ସ୍ୱୀକାର କରିବେ ଏବଂ ଆପଣଙ୍କୁ ଯୋଗ୍ୟ ବିବେଚିତ କରିବେ । ସାମର୍ଥ୍ୟବାନ୍‌କୁ ଏବଂ ସଫଳତା ଆଡ଼କୁ ଅଗ୍ରସର ବ୍ୟକ୍ତିକୁ କେହି ଅଟକାଇ ପାରିବେ ନାହିଁ ! ସ୍ୱାମୀଜୀ ସେହି ବିଶାଳ ସମାବେଶକୁ ସମ୍ବୋଧିତ କରି କହିଲେ, 'ଆମେରିକାବାସୀ ଭଉଣୀ ଓ ଭାଇମାନେ !' ଏବଂ ଦୀର୍ଘ ଦୁଇ ମିନିଟ୍ ଧରି ଦର୍ଶକ ତାଙ୍କୁ କରତାଳି ଦେଇ ସ୍ୱାଗତ କରିଥିଲେ । ସମ୍ପୂର୍ଣ୍ଣ ଦୁଇମିନିଟ୍ ! ଚିନ୍ତା କର । ଅନ୍ୟ ଏକ ବିଜୟ । କିନ୍ତୁ ବିଜୟ ଲାଭ ସଫଳତା ନୁହେଁ। ଆହୁରି ମଧ, ଆପଣ ସବୁ ସମୟରେ ଜୟଲାଭ କରିପାରିବେ ନାହିଁ । ଏହା ହିଁ ସତ୍ୟ ! ଏହା ଗାଣିତିକ ଦୃଷ୍ଟିରୁ ଅସମ୍ଭବ । ସେଇଥିପାଇଁ ସାର୍ ଡୋନାଲଡ୍ ବ୍ରାଡ୍‌ମ୍ୟାନଙ୍କର କ୍ରିକେଟ ପ୍ରତିଶତ ୯୯.୯୪, ସମ୍ପୂର୍ଣ୍ଣ ଶତ ପ୍ରତିଶତ ନୁହେଁ ଯାହା ଜଣେ ମହାନ୍ କ୍ରୀଡ଼ାବିତ୍‌ଙ୍କର ଯେକୌଣସି ମୁଖ୍ୟ କ୍ରୀଡ଼ା ପାଇଁ ସବୁଠାରୁ ବଡ଼ ଲକ୍ଷ୍ୟ ସାଧନ । ଆପଣ ସବୁ ସମୟରେ ଜୟଲାଭ କରିପାରିବେ ନାହିଁ । ଆପଣ ସମସ୍ତଙ୍କୁ କହି ପାରିବା ଭଳି ଆଶା କରିପାରିବେ ନାହିଁ । ଆପଣଙ୍କ ଉଦ୍ଦେଶ୍ୟକୁ ବୁଝିବା ଏବଂ ଗ୍ରହଣ କରିବା ପାଇଁ ଆପଣ ସେମାନଙ୍କଠାରୁ ଆଶା କରିପାରିବେ ନାହିଁ । ପ୍ରତ୍ୟେକଙ୍କ ଜୀବନକୁ ପ୍ରଭାବିତ କରିବାରେ ଆପଣ ଆଶା ରଖିପାରିବେ ନାହିଁ । ଜୟଯୁକ୍ତ ହେଉଛି ଧୀର, କଷ୍ଟସାଧ ଏବଂ ପରିଶ୍ରମ ସାଧ । ଯେତେ ଉପରକୁ ଆପଣ ଯିବେ, ଆପଣଙ୍କର ସେତେ ଅଧିକ ଉନ୍ନତି ହେବ । ସର୍ବୋଚ୍ଚ ସ୍ଥାନ ଆରୋହଣ କରିବା ଖୁବ୍ କଷ୍ଟସାଧ । ପରିଶେଷରେ, ଯେତେବେଳେ ଆପଣ କଠିନ ପରିଶ୍ରମ କରିବେ ଏବଂ ଉନ୍ନତିର କୌଣସି ସୂଚନା ପାଇବେ ନାହିଁ, ଆପଣ ବିସ୍ମିତ ହେବେ:'ଏହା ହିଁ ମୋର ସାମର୍ଥ୍ୟ ? ମୁଁ କ'ଣ ଆଉ ଅଧିକ କିଛି ଭଲ କରି ପାରିବି ନାହିଁ ? କିନ୍ତୁ ଆପଣ ଦୃଢ଼ ଏବଂ ସାହସୀ ହୁଅନ୍ତୁ ସୈନିକଭଳି ଆଗକୁ ଯାଆନ୍ତୁ; ଆପଣ ଧୈର୍ଯ୍ୟର ସହ ଅଟଳ ରହନ୍ତୁ,

ଲକ୍ଷ୍ୟ ସାଧନ ପାଇଁ ଅବିରତ ଚେଷ୍ଟା କରନ୍ତୁ, ଗୋଟିଏ ଉପାୟ ଏବଂ ଗୋଟିଏ ରାସ୍ତା ନ ପାଇବା ପର୍ଯ୍ୟନ୍ତ ଏବଂ ଏହା ନିଶ୍ଚିତ ଯେ, ଆପଣ ନିଜେ ଅନ୍ୟ ଏକ ଜୟଲାଭ ଦେଖି ପାରିବେ । ଉଲ୍ଲାସରେ ଆପଣ ଫାଟି ପଡ଼ିବେ, କିନ୍ତୁ କେବଳ କ୍ଷଣିକ ପାଇଁ । ହଠାତ୍ ଉଦ୍‌ବେଗ, ଉଲ୍ଲାସ ଆପଣଙ୍କୁ ଫୁସ୍‌ଫୁସ୍ କରି କହିବ, 'ଏହା କ'ଣ ରହିବ ? ଆପଣ ପରବର୍ତ୍ତୀ ସମୟରେ ସଫଳତା ଲାଭ କରିବେ କି ? ' ଆପଣ ଆଉଥରେ ଜୟଲାଭ କରି ପାରନ୍ତି କିମ୍ବା ନ କରି ପାରନ୍ତି ।

ଏ ଦୁନିଆ କ୍ଷମାଶୀଳ ନୁହେଁ । ସାଧାରଣତଃ ଭାରତରେ ଆପଣ ଯେତେବେଳେ ପରାଜୟ ଲାଭ କରନ୍ତି , ସମସ୍ତେ କହନ୍ତି : 'ସେ କୌଶଳ ହରାଇଛନ୍ତି ।' ସେମାନେ ଆପଣଙ୍କ ନିକଟକୁ ଗୋଟିଏ ଉପାଧି ଅପ୍ରତ୍ୟାଶିତ ଭାବରେ ଲେଖି ପଠାଇବେ । ସେମାନେ ଆପଣଙ୍କ କବଚରେ ସାମାନ୍ୟ ଛିଦ୍ର ଦେଖୁଛନ୍ତି, ଆପଣଙ୍କ ମୁଖମଣ୍ଡଳକୁ ତନ୍ନ ତନ୍ନ କରି ଦେଖୁଛନ୍ତି, ଆପଣଙ୍କ ଶାରୀରିକ ଭାଷାକୁ ଦେଖୁଛନ୍ତି, ଆପଣଙ୍କର ପ୍ରତ୍ୟେକ କଥାକୁ ଲକ୍ଷ୍ୟ କରୁଛନ୍ତି, ଯେତେବେଳେ ଆପଣଙ୍କ ଶରୀରରେ କ୍ଷୀଣ ରକ୍ତସ୍ରାବକୁ ନ ଦେଖାଇବା ପାଇଁ ଆପଣ ସଂଘର୍ଷ କରୁଛନ୍ତି । ସାମ୍ବାଦିକ ସମ୍ମିଳନୀରେ ଆପଣ ଅନେକ ସମାଲୋଚନା ମୂଳକ ପ୍ରଶ୍ନର ସମ୍ମୁଖୀନ ହେବେ, ଯେତେବେଳେ ଆପଣଙ୍କ ଚତୁଃପାର୍ଶ୍ୱରେ ବିଶୃଙ୍ଖଳିତ ଆଚରଣ ଓ କୋଳାହଳ ମଧ୍ୟରେ ଆପଣ ନିଜକୁ ଲୁଚାଇବାକୁ ଚେଷ୍ଟା କରୁଥିବେ ଏବଂ ଶାନ୍ତି ଖୋଜୁଥିବେ ।

ସଫଳତା କ'ଣ ? ସଫଳତା ହେଉଛି ଉପଲବ୍ଧି, ଯେଉଁଠି ମହାନତାର କୌଣସି ସୀମା ରେଖା ନ ଥାଏ । ଆପଣ ଯାହା ଜାଣିଛନ୍ତି କିମ୍ବା ଯାହା ହୋଇଛନ୍ତି, ଆପଣଙ୍କର ଯାହା ଅଛି ଏସବୁ କୁ ନିଜ କାର୍ଯ୍ୟ ମଧ୍ୟକୁ ଢାଳି ଦେବା ହେଉଛି ସଫଳତା । ଜୟଲାଭ ଏକ ଫଳାଫଳ : ଏହା ଘଟିପାରେ କିମ୍ବା ନ ଘଟିପାରେ । କୃତକାର୍ଯ୍ୟ ପାଇଁ ଏହା ରାସ୍ତା । ଆପଣ ସଫଳତା କିପରି ପ୍ରାପ୍ତ କରିବେ ? ସ୍ୱାମୀଜୀ କିଭଳି ସଫଳତା ଲାଭ କରିଥିଲେ ? ଜ୍ଞାନ ଏବଂ ବିଶ୍ୱାସ ତାଙ୍କ ସାମର୍ଥ୍ୟର ଦୁଇ ଅଟ୍ଟାଳିକା । ତାଙ୍କର ହିନ୍ଦୁଧର୍ମ ଗ୍ରନ୍ଥ ଓ ଦର୍ଶନଶାସ୍ତ୍ରରେ ଅବିଶ୍ୱାସ ଯୋଗ୍ୟ ଜ୍ଞାନ ପାଶ୍ଚାତ୍ୟ ବିଜ୍ଞାନର ଭାବନାରେ ଦୃଢ଼ହୋଇଥିଲା ଏବଂ ସେ ପ୍ରଥମ ବ୍ୟକ୍ତି ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ମଧ୍ୟରେ ଥିବା ପ୍ରାଚୀରକୁ ପ୍ରଥମେ ଭାଙ୍ଗିବାରେ ସଫଳତା ଲାଭ କରିଥିଲେ । ସେ ଜାଣିଥିବା ତଥ୍ୟକୁ କିଭଳି ଉପସ୍ଥାପନ କରିବେ ତାଙ୍କ ଜ୍ଞାନର ଗଭୀରତା ଏହା ସୂଚାଇ ଦେଉଥିଲା ।

ମୁଁ ଜଣେ ବନ୍ଧୁକ ଚାଳକ । ଫର୍ମରେ ରହିବା ପାଇଁ ମୁଁ ସବୁ କିଛି କରିପାରେ କିନ୍ତୁ ଏହି ପ୍ରଦର୍ଶନ (Form) ପ୍ରତାରିତ କରିପାରେ–ଏପରି ବହୁବାର ଘଟେ ଏବଂ ଏହା ସମସ୍ତଙ୍କ ଜୀବନରେ ଘଟିପାରେ । ଯେତେବେଳେ ମୋର ଶରୀର କିମ୍ବା ମନ କିମ୍ବା କୌଶଳ ମୋତେ ପ୍ରତାରିତ କରେ, ମୁଁ ସେତେବେଳେ ସଫଳତା ସୂତ୍ରର ଆଶ୍ରୟ ପ୍ରାର୍ଥୀ ହୁଏ : ଏହା ହେଲା 'ଜ୍ଞାନ ଏବଂ ବିଶ୍ୱାସ' । ମୋ କ୍ରୀଡ଼ାକୁ ଭଲ ଭାବରେ ଜାଣିବା ପାଇଁ ମୁଁ ଜୀବନ ସାରା କାର୍ଯ୍ୟକରି ଆସିଛି । ମୁଁ ଅନେକ ସରଞ୍ଜାମ, ଲକ୍ଷ୍ୟ ସ୍ଥଳ ଇତ୍ୟାଦିର ପରୀକ୍ଷା କରିଛି, କେଉଁଟି ମୋ ବନ୍ଧୁକ ଚାଳନା ପାଇଁ ଉପଯୁକ୍ତ ହେବ । ମୋ ଜୋତାର ତଳ ଅଂଶରେ ମୁଁ ଫେରାରି ଟାୟାରର ରବରକୁ ନେଇ ପରୀକ୍ଷା କରିଛି କାରଣ ମୁଁ ଭାବିଲି ଏହା ନିଶ୍ଚିତ ମୋତେ ସଫଳତା ଆଣିଦେବ । ଝକମକ ଆଲୋକ, ଲୋକମାନଙ୍କ କୋଳାହଳ, କରତାଳି ଏବଂ ମୋତେ ବିଭ୍ରାନ୍ତ କରିବାକୁ ଚାହୁଁଥିବା ପରିବେଶ ମଧ୍ୟରେ ମୁଁ ଲକ୍ଷ୍ୟ ଫଳକର କେନ୍ଦ୍ରକୁ ବନ୍ଧୁକ ଚାଳନା କରିଛି । ମୁଁ ଏସବୁକୁ ଗ୍ରହଣ କରି ନେଇଛି କାରଣ ମୁଁ ସମ୍ପୂର୍ଣ୍ଣ ପ୍ରସ୍ତୁତି ଉପରେ ବିଶ୍ୱାସ କରେ । ଜ୍ଞାନ ଏବଂ ବିଶ୍ୱାସ ମୋର କେବଳ ସହଯୋଗି ନୁହେଁ, ସେଗୁଡ଼ିକ ମୋର ଅସ୍ତ୍ର । ମୁଁ ଜୟଲାଭ କରେ ଅବା ପରାଜୟ ବରଣ କରେ, ସେଥିରୁ ମୁଁ ବର୍ଷ ବର୍ଷ ଧରି କ୍ରୀଡ଼ାରେ ଅଭିଜ୍ଞତା ଏବଂ ମୋ ନିଜ ବିଷୟରେ ଅନେକ ଜ୍ଞାନ ଆହାରଣ



ଅଭିନବ ବିନ୍ଦ୍ରା

କରିଛି । ମୁଁ ଯେତେବେଳେ ଜିତିଥାଏ ଲାଭ ସୁସ୍ପଷ୍ଟ ହୋଇଥାଏ । କିନ୍ତୁ ଯେତେବେଳେ ମୁଁ ହାରିଥାଏ ? ମୁଁ କ'ଣ ଲାଭ କରିଥାଏ ? ମୁଁ ଅଧିକ ଜ୍ଞାନ, ଅଧିକ ବିଶ୍ୱାସ ଲାଭ କରିଥାଏ ।ଏହି ଦୁଇଟିର ଅଭାବରୁ ମୁଁ ପରାଜୟ ବରଣ କରିଥିଲି, ଏହା ଜାଣି ପାରିଲି । ମୋ ନିଜକୁ ନିଜେ ଆଶ୍ୱସନା ଦିଏ ଯେ ମୁଁ କିଛି ଲାଭ କରିଛି । ହାରିଯିବା ସତ୍ତ୍ୱେ ମଧ ମୁଁ କିଛି ଲାଭ କରିଛି । ତେଣୁ ମୁଁ ଜିତେ କିମ୍ବା ହାରେ ମୁଁ କିଛି ଲାଭ କରିଥାଏ, କାରଣ ମୁଁ ଜ୍ଞାନ ଏବଂ ବିଶ୍ୱାସ ଲାଭ କରେ ।

ମୋର ସାମର୍ଥ୍ୟରେ ଥିବା ଜ୍ଞାନ ଏବଂ ବିଶ୍ୱାସ ଅନେକ ଦିନର ସକାଳ ପ୍ରଶିକ୍ଷଣରୁ ମୁଁ ଲାଭ କରିଛି । ମୁଁ ମୋ ଜୀବନର ଦୁଇ ତୃତୀୟାଂଶରୁ ଅଧିକ ସମୟ ବନ୍ଧୁକ ଚାଳନା କରି ସାରିଛି । ଏହି ସବୁ ବର୍ଷରେ ମୁଁ ପ୍ରଶିକ୍ଷଣକୁ ଯିବାପାଇଁ କେବେ ବି ବିଳମ୍ୱ କରି ନାହିଁ–କେବେ ନୁହେଁ । ଏହାକୁ ମୁଁ ମୋର ପରିଚୟ ପତ୍ର ଭାବରେ ବହନ କରିଥାଏ । ମୁଁ ମୋର ଅଭ୍ୟାସକୁ କେବେ କମାଇଦିଏ ନାହିଁ । ମୁଁ କେବେ ସହଜ ପଦ୍ଧତିରେ ଚେଷ୍ଟା କରେ ନାହିଁ । କାରଣ ମୁଁ ବାଲ୍ୟକାଳରୁ ଅନୁଭବ କରିଛି ସହଜ ପଦ୍ଧତି ହେଉଛି ନିଜକୁ ବୋକା କରିବାର ଗୋଟିଏ ଉପାୟ । ଯଦିଓ ମୁଁ ସେତେବେଳେ ସ୍ୱାମୀଜୀଙ୍କ ଭାବଧାରା ସହିତ ପରିଚିତ ନ ଥିଲି, ମୁଁ ତାଙ୍କ ବାଣୀକୁ ନେଇ ବଞ୍ଚିଥିଲି । ମୁଁ ସମ୍ପୂର୍ଣ୍ଣ ଭାବରେ ଗୋଟିଏ ଭାବନାକୁ ଗ୍ରହଣ କରି ନେଇଥିଲି, ପୂର୍ଣ୍ଣମାତ୍ରାରେ ମୁଁ ନିଜକୁ ଏଥିରେ ନିମଜ୍ଜିତ କରି ଦେଇଥିଲି, ଏବଂ ଅନ୍ୟ ସବୁ ଭାବନାକୁ ପରିତ୍ୟାଗ କରିଥିଲି । ଏହା ମୋତେ ଜ୍ଞାନ ଏବଂ ଶକ୍ତି ଦେଇଥିଲା । ମୋ ଜୀବନକୁ କଠୋର ଭାବରେ ଶୃଙ୍ଖଳିତ କରିବା ପାଇଁ, ସାଧାରଣ ଜୀବନକୁ ଜଳାଞ୍ଜଳି ଦେଇ ମୋତେ ଜଣେ ତରୁଣ ଏବଂ ଯୁବକ ଭାବରେ ଆଗେଇବାକୁ ପଡ଼ିବ, ଏହା ମୋତେ ଏହି ସାମର୍ଥ୍ୟ ପ୍ରଦାନ କରିଥିଲା । ଗୋଟିଏ ଧାରଣାରେ ନିମଜ୍ଜିତ ଥିବାରୁ, ହାରିବା କିମ୍ବା ଜିତିବା ମୋତେ ମୋ ପଥରୁ ବିଚ୍ୟୁତ କରିପାରି ନ ଥିଲା, ମୋତେ ଦୃଢ଼ କରିଥିଲା । ଏହା ମୋତେ ଆଗେଇ ଯିବା ପାଇଁ ମୋ ମନରେ ଏକ ସଂକଳ୍ପ ଦେଇଥିଲା, କାରଣ ମୋର ସଫଳତା ଦରକାର ।

## ତଥ୍ୟ ସଂଗୃହିତ

[1] *The Complete Works of Swami Vivekananda,* 9 vols (Calcutta: Advaita Ashram, 1-8, 1989; 9, 1997), 1.177.

[2] His Eastern and western Disciples, The life of Swami Vivekananda, 2 Vols (Kolkata, Advaita Ashrama, 2008)1.405-6

# ଚତୁର୍ଥ ଅଧ୍ୟାୟ ପାଇଁ ପରିଶିଷ୍ଟ

## ବିଜ୍ଞ ନାଗରୀକତା

*Enlightened citizenship*

**(ଡ଼ାଃ. ଏ.ପି.ଜେ. ଅବ୍‌ଦୁଲ୍ କାଲାମଙ୍କ ବକ୍ତୃତାରୁ)**

ଉତ୍ତମ ଚରିତ୍ର ଗଠନ ପାଇଁ ନୈତିକତା ହିଁ ଏକମାତ୍ର ଭିତ୍ତି । ଗୋଟିଏ ଜାତିର ଚରିତ୍ର ତା'ର ଲୋକମାନଙ୍କର ଚରିତ୍ର ଉପରେ ନିର୍ଭର କରେ । ଆମେ କିଭଳି ଏକ ସୁଖି, ସମୃଦ୍ଧିଶାଳୀ ଏବଂ ଶାନ୍ତ ସମାଜ ଏହି ପୃଥିବୀରେ ବିକଶିତ କରିବା ଏବଂ ଏହା ଦୀର୍ଘସ୍ଥାୟୀ କିପରି ହେବ ? ଏହାର ସମାଧାନ ପାଇଁ ଆମେ ଜ୍ଞାନ ଏବଂ ଅଭିଜ୍ଞତାକୁ ବାଣ୍ଟିବା ଆବଶ୍ୟକ ।

**ଯେତେବେଳେ ହୃଦୟରେ ନୈତିକତା ଅଛି, ଗୃହରେ ସଂହତି ଅଛି ।**

**ଯେତେବେଳେ ଗୃହରେ ସଂହତି ଅଛି, ଦେଶରେ ଶୃଙ୍ଖଳା ଅଛି ।**

**ଯେତେବେଳେ ଦେଶରେ ଶୃଙ୍ଖଳା ଅଛି, ପୃଥିବୀରେ ଶାନ୍ତି ଅଛି ।**

ଶିକ୍ଷା ମାଧ୍ୟମରେ ପିଲାମାନଙ୍କଠାରେ ନୈତିକତା ଅନ୍ତର୍ନିବେଶ କରାଯାଇ ପାରିବ, ଏଥିରେ ତିନିଜଣ ଲୋକଙ୍କର ପ୍ରମୁଖ ଭୂମିକା ଥାଏ–ବାପା, ମା, ଏବଂ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ।

ଯେ କୌଣସି ସମୟରେ ଆମ ଜନସଂଖ୍ୟାର ପାଖପାଖି ୩୦ କୋଟି (ଏକ ତୃତୀୟାଂଶ) ହେଉଛନ୍ତି ପିଲା । ସେମାନେ ୧୦+୨ ପାଠ୍ୟକ୍ରମ ଶେଷ କରିବା ପୂର୍ବରୁ ପ୍ରାୟ ୨୫୦୦୦ଘଣ୍ଟା ବିଦ୍ୟାଳୟରେ କଟାଇଥାନ୍ତି ।

ଆମେ ସମସ୍ତେ ପିଲା ଠାରୁ ପେସାକୁ ଆସିବା ପର୍ଯ୍ୟନ୍ତ ଶିକ୍ଷାର ବିଭିନ୍ନ ପର୍ଯ୍ୟାୟ ଦେଇ ଆସିଥାଉ । ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଜଣେ କିପରି ଆଚରଣ କରେ–ଯଥା:- ମନେକରନ୍ତୁ–'ମନୁଷ୍ୟର ଆବଶ୍ୟକତା' ? ଜଣେ ଶିଶୁ ପଚାରେ, ''ଆପଣ ମୋ ପାଇଁ କ'ଣ କରିପାରିବେ ?'' ଜଣେ ତରୁଣ କୁହେ, ''ମୁଁ ଏକା ଏହା କରିବାକୁ ଚାହୁଁଛି ।'' ଜଣେ ଯୁବକ କୁହେ, ''ଚାଲନ୍ତୁ ଏହା ମିଳିମିଶି କରିବା ।'' ଜଣେ ନେତା କୁହେ, ''ମୁଁ ଆପଣଙ୍କ ପାଇଁ କ'ଣ କରିପାରିବି ?''

ତେଣୁ ବିଜ୍ଞନାଗରିକ ପାଇଁ ଶିକ୍ଷାର ଅର୍ଥ ହେଲା, 'ଆପଣ ମୋ ପାଇଁ କ'ଣ କରିପାରିବେ' ରୁ 'ମୁଁ ଆପଣଙ୍କ ପାଇଁ କ'ଣ କରିପାରିବି ?' କୁ ରୂପାନ୍ତର ।

ଆମେ ଅଧିକାଂଶ ନିଜ ନିଜ ମଧ୍ୟରେ କଳହ କରି ଜଟିଳ ପରିସ୍ଥିତି ଦେଇ ଗତି କରୁଛେ । ପ୍ରତ୍ୟେକ କ୍ଷଣରେ ଆମ ମନ ମଧ୍ୟରେ ସଂଘର୍ଷ ରହୁଛି, ଆମେ ଏହି ଦିଗକୁ ଯିବୁ କି ସେ ଦିଗକୁ ଯିବୁ । ଯେତେବେଳେ ଆମେ ଦ୍ୱନ୍ଦ୍ୱରେ ରହୁ, ଆମକୁ ନୈତିକ ପଥରେ ଆଗେଇ ନେବାପାଇଁ ଆମେ ନିଶ୍ଚିତ ଭାବରେ ସେହି ସର୍ବଶକ୍ତିମାନଙ୍କ ନିକଟରେ ପ୍ରାର୍ଥନା କରିବା ଦରକାର ।

ଏହି କୌଶଳ ମାଧ୍ୟମରେ, ଶିଶୁଟି ତା'ର ବିକାଶର ବିଭିନ୍ନ ସ୍ତରରେ ବାପା ମା ଏବଂ ଶିକ୍ଷକଙ୍କ ଦ୍ୱାରା କ୍ଷମତାଶାଳୀ ହୁଏ ।

ଏହି କୌଶଳ ମାଧ୍ୟମରେ, ଜଣେ ଶିକ୍ଷକ ଜ୍ଞାନ ଏବଂ ଅନୁଭୂତିରେ କ୍ଷମତାଶାଳୀ ହୋଇଥାଏ, ଏବଂ ଫଳସ୍ୱରୂପ, ମୂଲ୍ୟବୋଧ ଭିତ୍ତିକ ଉତ୍ତମ ଯୁବ ଚରିତ୍ରର ସୃଷ୍ଟି ହୁଏ ।

ଏହି କୌଶଳ ମାଧ୍ୟମରେ, ଯେତେବେଳେ ଜଣେ ବ୍ୟକ୍ତି ବା ବ୍ୟକ୍ତିସମୁହ ଯାନ୍ତ୍ରିକ ବିଜ୍ଞାନରେ ଶକ୍ତିଶାଳୀ ହୁଅନ୍ତି , ସେତେବେଳେ ସର୍ବୋଚ୍ଚ ସ୍ତରରେ ପହଞ୍ଚିବା ସ୍ଥିର ହୋଇଯାଏ ।

ଏହି କୌଶଳ ମାଧ୍ୟମରେ, ଯେତେବେଳେ କୌଣସି ଅନୁଷ୍ଠାନର ନେତା ତାଙ୍କର ଲୋକମାନଙ୍କୁ

କ୍ଷମତାଶାଳୀ କରାନ୍ତି, ଅନେକ ପଥ ପ୍ରଦର୍ଶକ ସୃଷ୍ଟି ହୁଅନ୍ତି ଏବଂ ସେମାନେ ଅନେକାଂଶରେ ଜାତିକୁ ବଦଳାଇ ଦେଇ ପାରନ୍ତି।

ଏହି କୌଶଳ ମାଧ୍ୟମରେ, ଯେତେବେଳେ ଜଣେ ନାରୀ ଶକ୍ତିମତି ହୁଅନ୍ତି, ସେତେବେଳେ ସମାଜରେ ସ୍ଥିରତା ନିଶ୍ଚିତ ଆସେ।

ଏହି କୌଶଳ ମାଧ୍ୟମରେ, ଯେତେବେଳେ ରାଜନୈତିକ ନେତା ତାଙ୍କର ଦୂରଦୃଷ୍ଟି ନୀତି ଦ୍ୱାରା ଲୋକମାନଙ୍କୁ କ୍ଷମତାଶାଳୀ କରାନ୍ତି, ଦେଶର ଉନ୍ନତି ନିଶ୍ଚିତ।

ଏହି କୌଶଳ ମାଧ୍ୟମରେ, ଯେତେବେଳେ ଧର୍ମ ଶକ୍ତିଶାଳୀ ହୁଏ ଏବଂ ଆଧ୍ୟାତ୍ମିକତାକୁ ରୂପାନ୍ତରିତ ହୁଏ, ଶାନ୍ତି ଏବଂ ଆନନ୍ଦ ଲୋକଙ୍କ ହୃଦୟରେ ପ୍ରସ୍ଫୁଟିତ ହୁଏ।

ଏହିପରି ଶକ୍ତିଶାଳୀ କୌଶଳ ସମାଜରେ ମୂଲ୍ୟଭିତ୍ତିକ ବିଜ୍ଞ ନାଗରିକ ସୃଷ୍ଟି କରିବାପାଇଁ ସହାୟକ। ଏହିପରି ଶକ୍ତିଶାଳୀ ସ୍ତର ସଚ୍ଚେତନ ନାଗରିକ ସୃଷ୍ଟି କରିବାରେ ଆଗେଇ ନେବ।

************

## 'ମୁଁ କିପରି ହେବି ?' ପୁସ୍ତକ ନିମନ୍ତେ ଶବ୍ଦର ଅର୍ଥ

**ପୃଷ୍ଠା–୧**

**୧. ଗାଲିଲିଓ:–** (ଗାଲିଲିଓ ଗାଲିଲୀ–୧୫୬୪–୧୬୪୨) ସେ ଜଣେ ଇଟାଲୀୟ ପଦାର୍ଥ ବିଜ୍ଞାନୀ, ଗଣିତଜ୍ଞ, ଜ୍ୟୋତିର୍ବିଦ୍ ଏବଂ ଦାର୍ଶନିକ ଥିଲେ। ବୈଜ୍ଞାନିକ–ବିପ୍ଳବରେ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ତାଙ୍କୁ ନିମ୍ନ ସମ୍ମାନରେ ଅଭିବାଦନ କରାଯାଇଛି।

ଯଥା– ଆଧୁନିକ ଭୂଗୋଳ ଶାସ୍ତ୍ରର ଜନକ

ଆଧୁନିକ ପଦାର୍ଥ–ବିଜ୍ଞାନର ଜନକ

ଆଧୁନିକ ବିଜ୍ଞାନର ଜନକ

ସେ ଜଣେ ଆଧୁନିକ ଚିନ୍ତାବିଦ୍‌ମାନଙ୍କ ମଧ୍ୟରୁ ପ୍ରଥମ ଥିଲେ, ଯିଏ ସ୍ପଷ୍ଟଭାବରେ ଘୋଷଣା କରିଥିଲେ ଯେ ପ୍ରକୃତିର ନିୟମ ଗଣିତର ସୂତ୍ରଦ୍ୱାରା ପରିଚାଳିତ।

ଗଣିତ, ତାତ୍ତ୍ୱିକ–ପଦାର୍ଥ ବିଜ୍ଞାନ (Theoritical Physics) ଏବଂ ପ୍ରୟୋଗସିଦ୍ଧ–ପଦାର୍ଥବିଜ୍ଞାନ (Exeperimental Physics) ମଧ୍ୟରେ ଥିବା ସୂକ୍ଷ୍ମ–ସଂପର୍କକୁ ସେ ପ୍ରତିପାଦନ କରିଥିଲେ।

**୨. କୋପରନିକସ୍ :** (ନିକୋଲାସ୍ କୋପରନିକସ୍–୧୪୭୩–୧୫୪୩)। ସେହି ସମୟରେ ସେ ଜଣେ ପୋଲାଣ୍ଡ୍–ଦେଶୀୟ ଗଣିତଜ୍ଞ ଏବଂ ଜ୍ୟୋତିର୍ବିଦ୍ ଥିଲେ। ସୌର–ଜଗତ ସମ୍ବନ୍ଧୀୟ ଥିବା ଜ୍ଞାନରେ ସେ ପରିବର୍ତ୍ତନ ଆଣିଥିଲେ। ଆମେ ବିଶ୍ୱାସ କରୁଥିଲୁ ସୂର୍ଯ୍ୟ ପୃଥିବୀକୁ ପରିକ୍ରମା କରୁଅଛି। ସେ ଗାଣିତିକ ସୂତ୍ର ଅନୁସାରେ ଦର୍ଶାଇଲେ ଯେ ସୂର୍ଯ୍ୟ ହେଉଛି ସୌର–ଜଗତର ସ୍ଥିର କେନ୍ଦ୍ର ଏବଂ ପୃଥିବୀ ଏହାକୁ ପରିକ୍ରମା କରୁଅଛି।

**୩. ସ୍ୱାଧୀନ ଚିନ୍ତା :** –ଏହା ଏକ ଦାର୍ଶନିକ ମତବାଦ ଯାହାର ଅଭିପ୍ରାୟ ହେଲା ତର୍କ, ବିଚାର ଏବଂ ଅଭିଜ୍ଞତାକୁ ଆଧାର କରି 'ମତ' ଦେବା ଉଚିତ୍। ଏହା ପରମ୍ପରା, ପ୍ରଭୁତ୍ୱ ଅଥବା ସିଦ୍ଧାନ୍ତ ଦ୍ୱାରା ସ୍ୱୀକାର୍ଯ୍ୟ ନୁହେଁ।

**ପୃଷ୍ଠା-୨**

**ପାରମାଣବିକ ପ୍ରତିକ୍ରିୟା:**

ସମସ୍ତ ପଦାର୍ଥ ପରମାଣୁମାନଙ୍କୁ ନେଇ ଗଠିତ । ପରମାଣୁ ଗୁଡ଼ିକ ନାଭି-କେନ୍ଦ୍ର ଏବଂ ଇଲେକ୍ଟ୍ରନ୍ ମାନଙ୍କ ଦ୍ୱାରା ଗଠିତ । ଯେତେବେଳେ ଦୁଇଟି ପଦାର୍ଥ ପରସ୍ପର ମଧ୍ୟରେ ପ୍ରତିକ୍ରିୟା କରନ୍ତି, ଏହା ଦୁଇ ପ୍ରକାରରେ ଅନୁଷ୍ଠିତ ହୁଏ । ପ୍ରଥମ ପ୍ରକାର ହେଲା-ଇଲେକ୍ଟ୍ରନ୍ ଗୁଡ଼ିକ ପରସ୍ପର ମଧ୍ୟରେ ମିଶିଯାଆନ୍ତି, ଏହାକୁ ରାସାୟନିକ ପ୍ରତିକ୍ରିୟା କୁହାଯାଏ । ଯଦି ପାରମାଣବିକ ପ୍ରତିକ୍ରିୟା ଭଲଭାବରେ ନିୟନ୍ତ୍ରଣରେ ରଖି ବ୍ୟବହାର କରାଯାଏ ଏହା ମାନବ କଲ୍ୟାଣ କାର୍ଯ୍ୟରେ ବ୍ୟବହାର କରାଯାଇ ପାରିବ, ଯଥା-ବିଦ୍ୟୁତ ଉତ୍ପାଦନ ଇତ୍ୟାଦି । ଯଦି ଏହି ପ୍ରତିକ୍ରିୟା ନିୟନ୍ତ୍ରଣ ବାହାରକୁ ଚାଲିଯିବ ତା'ହେଲେ ଏହାକୁ ରାସାୟନିକ ପରମାଣୁ ବୋମା ବୋଲି କୁହାଯିବ ! ଯାହାର ପରିଣାମ ଭୟାବହ ।

**ପୃଷ୍ଠା- ୩**

**ଡ. ଆଲବର୍ଟ ଆଇନ୍‌ଷ୍ଟାଇନ୍ : (୧୮୭୯-୧୯୫୫)**

ସେ ଜଣେ ଜର୍ମାନ୍ ଦେଶୀୟ ପଦାର୍ଥ-ବିଜ୍ଞାନୀ ଯେ ଆପେକ୍ଷିକ ତତ୍ତ୍ୱ (Theory of Relativity)ର ସିଦ୍ଧାନ୍ତ ନିରୂପଣ କରିଥିଲେ । ତାଙ୍କର ବିଶିଷ୍ଟ ସମୀକରଣ $E=mc^2$ ପାଇଁ ସେ ପ୍ରସିଦ୍ଧି-ଲାଭ କରିଛନ୍ତି । 'Photoelectric effect'ର ଆବିଷ୍କାର ପାଇଁ ତାଙ୍କୁ ୧୯୨୧ ମସିହାରେ ନୋବେଲ୍ ପୁରସ୍କାର ଦିଆଯାଇଥିଲା

**ସ୍ୱାମୀ ରଙ୍ଗନାଥାନନ୍ଦ : (୧୯୦୮-୨୦୦୫)**

ସେ ରାମକୃଷ୍ଣ ମଠ ଏବଂ ରାମକୃଷ୍ଣ ମିଶନର ତ୍ରୟୋଦଶ ସଂଘ ଅଧ୍ୟକ୍ଷ ଥିଲେ । ୧୯୮୭ ମସିହାରେ ରାମକୃଷ୍ଣ ମିଶନକୁ Indira Gandhi Award for National Integration ପ୍ରଦାନ କରାଯାଇଥିଲା ଏବଂ ୧୯୯୯ ମସିହାରେ (Gandhi Peace Prize) ପ୍ରଦାନ କରାଯାଇଥିଲା । ବ୍ୟବହାରିକ-ଜୀବନରେ ବେଦାନ୍ତ ବିଷୟରେ ସ୍ୱାମୀ ରଙ୍ଗନାଥାନନ୍ଦଜୀ ଜଣେ ପ୍ରଭୂତ୍ୱ-ସମ୍ପନ୍ନ ବ୍ୟକ୍ତି ଥିଲେ । ବର୍ଷକୁ ଥରେ ସେ ପୂର୍ବ-ଇଉରୋପୀୟ ଦେଶ, ଆମେରିକା, ଅଷ୍ଟ୍ରେଲିଆ, ସିଂଗାପୋର୍, ଇରାନ୍ ଏବଂ ଋଷିଆ ଭଳି ଦେଶକୁ ବକ୍ତୃତା ଉଦ୍ଦେଶ୍ୟରେ ଭ୍ରମଣ କରୁଥିଲେ । ପାଶ୍ଚାତ୍ୟ ବିଜ୍ଞାନ ଏବଂ ବୈଦାନ୍ତିକ-ଆଧ୍ୟାତ୍ମ ବିଦ୍ୟା ମଧ୍ୟରେ ସମ୍ପର୍କର ସେତୁ ଦୃଢ଼ କରିବା ପାଇଁ ସେ ସର୍ବଜନ-ବିଦିତ ।

**ପ୍ରିନ୍‌ସଟନ୍ ଇଉନିଭରସିଟି :**

ଆମେରିକାର ନିଉ-ଜର୍ସୀରେ ଏହି ବିଶ୍ୱ-ବିଦ୍ୟାଳୟ ପ୍ରତିଷ୍ଠିତ । ଆଲବର୍ଟ ଆଇନ୍‌ଷ୍ଟାଇନ୍ ଏଠାରେ ଜଣେ ପ୍ରାଧ୍ୟାପକ ଭାବରେ କାମ କରୁଥିଲେ ।

**ପୃଷ୍ଠା-୪**

**ବୈଜ୍ଞାନିକ-ମନୋଭାବ :** ଏହି ମନୋଭାବ ବର୍ଣ୍ଣନା କରେ : ତର୍କ-ସଙ୍ଗତ ହେବା ଉଚିତ୍ ଏବଂ ପକ୍ଷପାତୀ ହେବା ଅନୁଚିତ୍। ପୂର୍ବ ଧାରଣା ଅଥବା ପୂର୍ବ କଳ୍ପନା ନ ରହିବା ଉଚିତ୍।

ବୈଜ୍ଞାନିକ-ମନୋଭାବର ଅଙ୍ଗ ଗୁଡ଼ିକ ହେଲା :

କ. ଆଲୋଚନା

ଖ. ତର୍କ-ବିତର୍କ

ଗ. ବିଶ୍ଳେଷଣ

ଏହା ସମାନତା, ନ୍ୟାୟ ପରାୟଣତା ଏବଂ ଗଣତନ୍ତ୍ର ଭଳି ଉପାଦାନ ଦ୍ୱାରା ଗଠିତ ।

**ପୃଷ୍ଠା-୫**

**ମତବାଦ :** ଏହା ଏକ ପ୍ରମାଣିତ ସୂତ୍ର ଯାହା ପ୍ରତିବାଦ ଅଥବା ସନ୍ଦେହର ଅତୀତ । ସିଦ୍ଧାନ୍ତ ଉପରେ କୌଣସି ପ୍ରଶ୍ନ କରାଯାଇ ପାରିବ ନାହିଁ ଅଥବା ଏହାକୁ ବଦଳ କରାଯାଇ ପାରିବ ନାହିଁ ।

**ବେଦାନ୍ତ :** ଦାର୍ଶନିକ ପରମ୍ପରାରେ ବିଶ୍ୱାସ ରଖୁଥିବା ସଂପ୍ରଦାୟ ଯାହାର ମୂଳ ଲକ୍ଷ୍ୟ ଆତ୍ମ-ଅନୁଭୂତି ଅଥବା ଆତ୍ମ-ସାକ୍ଷାତକାର । ଆତ୍ମ-ଅନୁଭୂତିର ଅର୍ଥ ହେଲା-ଚୁଡ଼ାନ୍ତ ସତ୍ୟ ନିରୂପଣ କରିବା ।

**ବିଜ୍ଞାନ :** ବୈଜ୍ଞାନିକ-ଚିନ୍ତାଧାରାରେ ପ୍ରକୃତିକୁ ଅଧ୍ୟୟନ କରିବାକୁ ବିଜ୍ଞାନ କୁହାଯାଏ ।

**ଉପନିଷଦ :** ଦର୍ଶନ ଏବଂ ଅଧ୍ୟାତ୍ମ ଶାସ୍ତ୍ର ଯାହା ହିନ୍ଦୁଧର୍ମର ପାରମ୍ପରିକ ଆଧାର । ଏଗୁଡ଼ିକ ବେଦର ଗୋଟିଏ ଗୋଟିଏ ଅଂଶ ।

**ପୃଷ୍ଠା -୬**

**ବୈଜ୍ଞାନିକ ପଦ୍ଧତି :** ପୂର୍ବରୁ ବର୍ଣ୍ଣିତ ବୈଜ୍ଞାନିକ-ଚିନ୍ତାଧାରାର ଏହା ଏକ ଅଙ୍ଗ ।

**ପୃଷ୍ଠା-୭**

**ଯୁକ୍ତିଯୁକ୍ତତା :** ଏହା ଏକ ଚିନ୍ତାଧାରାର ପ୍ରକ୍ରିୟା ଯାହା ଯୁକ୍ତି ଉପରେ ପ୍ରତିଷ୍ଠିତ ଏବଂ ଲକ୍ଷ୍ୟ ପ୍ରାପ୍ତ କରିବା ଅଥବା କୌଣସି ସମସ୍ୟାର ସମାଧାନ କରିବା ପାଇଁ ଏହା ରାସ୍ତା ଦେଖାଏ ।

**ପୃଷ୍ଠା-୮**

**ଶ୍ରଦ୍ଧା :** ପ୍ରେମ ଏବଂ ସମ୍ମାନର ସହିତ ବିଶ୍ୱାସ କରିବାକୁ ଶ୍ରଦ୍ଧା କୁହାଯାଏ । ସ୍ୱାମୀ ବିବେକାନନ୍ଦ ଥରେ କହିଥିଲେ : 'ଶ୍ରଦ୍ଧା ହେଉଛି ଗୋଟିଏ ସଂସ୍କୃତ ଶବ୍ଦ ଯାହାର ଇଂରାଜୀ ଅର୍ଥ ନାହିଁ ।

**ପୃଷ୍ଠା-୧୨**

**ଆଦର୍ଶ :** ଶ୍ରଦ୍ଧା, ଭକ୍ତି ଏବଂ ସମ୍ମାନ ଚକ୍ଷୁରେ ଜଣେ ବ୍ୟକ୍ତିଙ୍କୁ ଅଭିହିତ କରିବା ।

**ପୃଷ୍ଠା-୧୩**

**ଆତ୍ମା:**- ବ୍ୟକ୍ତିର ଅଭିନ୍ନ ସତ୍ତା ।

**ପୃଷ୍ଠା-୧୪**

**ସୁବିଧା ସୁଯୋଗରୁ ବଞ୍ଚିତ :** ଆମ ଚତୁଃପାର୍ଶ୍ୱରେ ଆମେ ଅସଂଖ୍ୟ ଲୋକଙ୍କୁ ଦେଖୁ ଯେଉଁମାନେ ଯୁବକ କିମ୍ବା ବୃଦ୍ଧ ହୋଇପାରନ୍ତି, ଯେଉଁମାନେ ଅନ୍ୟମାନଙ୍କ ଦ୍ୱାରା ଅବହେଳିତ, ସେମାନେ ନିଜ ଅବସ୍ଥାରେ ଉନ୍ନତି ଆଣିବା ପାଇଁ ଅକ୍ଷମ । ଏହି ପ୍ରକାର ଲୋକଙ୍କୁ ସମାଜ ଦ୍ୱାରା ଅବହେଳିତ କୁହାଯାଏ ।

**ପୃଷ୍ଠା–୧୫**

**ଟେଲି-ମେଡ଼ିକାଲ ଚାକିରୀ :**

କୃତ୍ରିମ–ଉପଗ୍ରହ ମାଧ୍ୟମରେ ଦୂର–ଦୂରାନ୍ତରେ ଥିବା ଅଞ୍ଚଳରେ ଯେଉଁ ବିଶେଷ ଚିକିତ୍ସା ଯୋଗାଇ ଦିଆଯାଏ । ରୋଗୀର ଚିକିତ୍ସାର ସଂକଟ ଅବସ୍ଥାରେ ଅଥବା ଜରୁରୀ–କାଳୀନ ଚିକିତ୍ସା ପାଇଁ ଏହି ସେବାର ସାହାଯ୍ୟ ନେଇ ରୋଗୀଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କରାଯାଇ ପାରୁଛି ।

**ପୃଷ୍ଠା–୨୫**

**ପରିବେଶ ବିଜ୍ଞାନ :**

ଜୀବିତ ପ୍ରାଣୀ ବା ଉଦ୍ଭିଦ ଏବଂ ଏମାନଙ୍କ ସହିତ ପରିବେଶରେ ସମ୍ବନ୍ଧ ବିଷୟକ ବିଜ୍ଞାନ ।

**କୀଟନାଶକ :** ମହାମାରୀ ଅଥବା ଅନିଷ୍ଟକାରୀ ରୋଗ ସୃଷ୍ଟି କରୁଥିବା କୀଟଙ୍କୁ ମାରିବା ଔଷଧ ।

**ପୃଷ୍ଠା–୨୬**

**ପରାଗସଙ୍ଗମ :**

ବିଭିନ୍ନ ଗଛରୁ ପରାଗରେଣୁ ଫୁଲ ପର୍ଯ୍ୟନ୍ତ ଯିବା । (ଗୋଟିଏ ଗଛର ପରାଗରେଣୁ ଅନ୍ୟ ଗୋଟିଏ ଗଛର ଫୁଲରେ ପଡ଼ିବା)

**ପୃଷ୍ଠା–୩୧**

**କେଲ୍‌ଭିନ୍ ଓ ହବସ୍ :**

ବିଲ ୱାଟରସନ୍‌ଙ୍କ ଦ୍ୱାରା ୧୯୮୫ ରୁ ୧୯୯୫ ପର୍ଯ୍ୟନ୍ତ ପ୍ରତ୍ୟେକ ଦିନ ପ୍ରସ୍ତୁତ 'କମିକ୍ସ' (ହାସ୍ୟୋଦ୍ଦୀପକ କଥା ଏବଂ ଚିତ୍ର)

**ପୃଷ୍ଠା–୩୧**

**ଆଲଙ୍ଗ, ଅରୁଣାଞ୍ଚଳ ପ୍ରଦେଶ :**

ଆଲଙ୍ଗ, ଯାହା 'ଆଲୋ' ଭାବରେ ଜଣାଶୁଣା ଗୋଟିଏ ପାର୍ବତୀୟ ସହର ଏବଂ ଏହା ଅରୁଣାଞ୍ଚଳ ରାଜ୍ୟର 'ପଶ୍ଚିମ–ସିଆଙ୍ଗ ଜିଲ୍ଲାର ସଦରମହକୁମା ଅଟେ । ଏହା ମୂଳତଃ ଗୋଟିଏ ଉପତ୍ୟକା ଏବଂ ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତ୍ୟନ୍ତ ମନୋମୁଗ୍ଧକର । ଏହି ସହରର ଚତୁଃପାର୍ଶ୍ୱରେ ପର୍ବତ ପରିବେଷ୍ଟିତ ଏବଂ ଏହା ମଧ୍ୟଦେଇ ଦୁଇଟି ନଦୀ ପ୍ରବାହିତ । ଅରୁଣାଞ୍ଚଳ ପ୍ରଦେଶର ଏହି ଅଞ୍ଚଳରେ ରାମକୃଷ୍ଣ ମିଶନ ଦ୍ୱାରା ଆଦିବାସୀ ଛାତ୍ର–ଛାତ୍ରୀମାନଙ୍କ ପାଇଁ ଗୋଟିଏ ବିଦ୍ୟାଳୟ ୧୯୬୬ ମସିହାରୁ ପରିଚାଳିତ ହେଉଛି ।

**ସାମୁଏଲ୍ ସ୍ମାଇଲସ୍ :** (୧୮୧୨–୧୯୦୪) । ସ୍କଟିସ୍ ଲେଖକ ଏବଂ ସମାଜ ସଂସ୍କାରକ । ସେଲଫ୍–ହେଲପ୍ କ୍ୟାରେକ୍ଟର, ଡ୍ୟୁଟି ଆଣ୍ଡ ଲାଇଫ୍ ଇତ୍ୟାଦି ପୁସ୍ତକର ରଚୟିତା ।

**ଡାନ୍ ବ୍ରାଉନ୍ :** (ଜନ୍ମ –୧୯୬୪) । ଆମେରିକୀୟ ଲେଖକ । ସେ ଲୋକପ୍ରିୟ ଉପନ୍ୟାସ ଲେଖିଛନ୍ତି, ଯଥା : ଡିଜିଟାଲ୍ ଫୋର୍ଟ୍ରେସ୍, ଡିସେପ୍‌ସନ୍ ପଏଣ୍ଟ, ଆଞ୍ଜେଲସ୍ ଆଣ୍ଡ ଡେମନ୍ସ ଇତ୍ୟାଦି ।

**ପୃଷ୍ଠା–୩୨**

**ଅସହଯୋଗ ଆନ୍ଦୋଳନ :**

ମହାତ୍ମାଗାନ୍ଧୀଙ୍କ ଦ୍ୱାରା ଅହିଂସା ନୀତିରେ ପରିଚାଳିତ ଅସହଯୋଗ ଆନ୍ଦୋଳନ ଅନନ୍ୟ ସ୍ୱାଧିନତା ସଂଗ୍ରାମ । ସେ ଭାରତୀୟମାନଙ୍କୁ ନିର୍ଦ୍ଦେଶ ଦେଲେ ଇଂରେଜମାନଙ୍କ ସହିତ ଅସହଯୋଗ କରିବା ପାଇଁ, ସେମାନେ ଭାରତୀୟମାନଙ୍କ ଉପରେ ନ୍ୟସ୍ତ କରିଥିବା ନୀତି–ନିୟମକୁ ଅବମାନନା କରିବାପାଇଁ, ଯାହା ବଳରେ ସେମାନେ ଆମ ଦେଶ ଛାଡ଼ିବାକୁ ବାଧ ହେବେ । ସ୍ୱାଧିନତା ଲାଭ କରିବା ପାଇଁ ବିଶ୍ୱର ଅନ୍ୟ କୌଣସି ଦେଶ ଏହି ଅଭିନବ ଉପାୟରେ ସଂଗ୍ରାମ କରିନାହାନ୍ତି ।

**ପୃଷ୍ଠା–୩୩**

**ଡାୟୋଜିନ୍ସ୍ : (412BC-323BC)**

ଗ୍ରୀକ୍ ଦାର୍ଶନିକ, ନୈରାଶବାଦୀ ଦର୍ଶନର ପ୍ରତିଷ୍ଠାତା । କଥା ଅପେକ୍ଷା କାର୍ଯ୍ୟରେ ସଙ୍କୋଟତା ଅଧିକ ପ୍ରକାଶିତ କଥାକୁ ସେ ବିଶ୍ୱାସ କରୁଥିଲେ ।

**ପୃଷ୍ଠା–୩୫**

**କର୍ତ୍ତବ୍ୟ ଏବଂ ଅଧିକାର :**

ଆମର ଜାତୀୟ ସମ୍ବିଧାନ ଆମକୁ କିଛି ନିର୍ଦ୍ଦିଷ୍ଟ ମୌଳିକ ଅଧିକାର ପ୍ରଦାନ କରିଛି । ଏହା ମଧ କିଛି ମୌଳିକ କର୍ତ୍ତବ୍ୟ ଆମମାନଙ୍କୁ ଦେଇଛି । ଅଧିକାରରୁ ଯେପରି ଆମେମାନେ ବିଚ୍ୟୁତ ନ ହେଉ ସେ ବିଷୟରେ ଆମେ ଦାବି କରିଥାଉ କିନ୍ତୁ ଆମର ଦେଶପ୍ରତି ଯେଉଁ କର୍ତ୍ତବ୍ୟ ଅଛି ତାହା ଆମେ ସମ୍ପାଦନା ନ କଲେ ମଧ ସେ ବିଷୟରେ ଅଭିଯୋଗ କରି ନ ଥାଉ । ସମ୍ବିଧାନ ଦ୍ୱାରା ପ୍ରଦତ୍ତ କର୍ତ୍ତବ୍ୟ ବନାମ୍ ଅଧିକାର ଏହି ଦୁଇଟି ବିରୋଧୀ ମତ ବା ନୀତି ମଧରେ ଯେଉଁ ପାର୍ଥକ୍ୟ ତାହା ଏଠାରେ ବର୍ଣ୍ଣିତ ହୋଇଛି ।

**କାର୍ଲାଇଲ୍ : (୧୭୯୫–୧୮୮୧)**

ସ୍କଟିସ୍ ଦାର୍ଶନିକ, ବ୍ୟଙ୍ଗକାର, ପ୍ରାବନ୍ଧିକ, ସାହିତ୍ୟିକ, ଐତିହାସିକ ଏବଂ ଶିକ୍ଷକ । 'ଫ୍ରେଞ୍ଚ ରିଭୋଲ୍ୟୁସନ୍–ଏ ହିଷ୍ଟୋରୀ ' ପୁସ୍ତକର ପ୍ରଣେତା ।

**ପୃଷ୍ଠା–୩୬**

**ଏ.ଏଲ୍.ବାସାମ୍ (ଆର୍ଥର ଲେଉଲିନ୍ ବାସମ୍) ୧୯୧୪-୧୯୮୬**

ସେ ଜଣେ ପ୍ରସିଦ୍ଧ ଐତିହାସିକ ଏବଂ ଜଣେ Indologist । ସେ ଲଣ୍ଡନରେ ଥିବା ପ୍ରାଚ୍ୟ ଶିକ୍ଷା ବିଭାଗର (School of oriental Studies)ରେ ଜଣେ ପ୍ରାଧାପକ ଥିଲେ । ଭାରତର R.S Sharma ଏବଂ Romila Thapar ଭଳି ପ୍ରସିଦ୍ଧ ଐତିହାସିକମାନଙ୍କୁ ସେ ଶିକ୍ଷା ଦେଇଥିଲେ । ଭାରତର ସଭ୍ୟତା ବିଷୟରେ ଜାଣିବା ପାଇଁ ତାଙ୍କର ପୁସ୍ତକ 'ଦି ଓଣ୍ଡର ଦ୍ୟାଟ୍ ୱାଜ୍ ଇଣ୍ଡିଆ' ବହୁଳ ଭାବରେ ପଠିତ।

**ପୃଷ୍ଠା–୩୭**

**ନେପୋଲିଅନ୍ (୧୭୬୯–୧୮୨୧)**

ସେ ଜଣେ ଫ୍ରାନସ୍ ଦେଶର ପ୍ରସିଦ୍ଧ ସାମରିକ ଏବଂ ରାଜନୈତିକ ନେତା । ଫ୍ରେଞ୍ଚ ବିପ୍ଳବର ଶେଷ ଭାଗରେ ସେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କର ଅନନ୍ୟ ବ୍ୟକ୍ତିତ୍ୱ ଥିଲା ଏବଂ ତାଙ୍କର ସମ୍ମୋହକ ପ୍ରଭାବ ବିଶେଷ

ଭାବରେ ଜନସାଧାରଣଙ୍କ ଉପରେ ଅନୁଭୂତ ହେଉଥିଲା । ତାଙ୍କର ଅସାଧାରଣ ସ୍ମରଣଶକ୍ତି ଫଳରେ ସେ ଜନସାଧାରଣଙ୍କୁ ପ୍ରେରଣା ଦେବାରେ ଅଭିଜ୍ଞ ଥିଲେ । ଘଟୁଥିବା ଘଟଣା, ଜନସାଧାରଣ, ସାମରିକ ବିଭାଗ ଏବଂ ମାନଚିତ୍ର ଉପରେ ଘଟୁଥିବା ତଥ୍ୟକୁ ସେ ମନେ ରଖି ପାରୁଥିଲେ ।

**ଧର୍ମ ନିରପେକ୍ଷତା :** ଧର୍ମୀୟ ଅନୁଷ୍ଠାନମାନଙ୍କୁ ସରକାରୀ ଅନୁଷ୍ଠାନମାନଙ୍କଠାରୁ ଅଲଗା କରିବା । ଏହା ମାନବିକ କାର୍ଯ୍ୟକଳାପ ଏବଂ ନିଷ୍ପତ୍ତିକୁ ବିଶେଷତଃ ରାଜନୈତିକ କାର୍ଯ୍ୟକୁ ଧାର୍ମୀକ ଅନୁଷ୍ଠାନମାନଙ୍କର ବିନା ପ୍ରଭାବରେ କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ କରେ । ଅଧିକାଂଶ ପ୍ରସିଦ୍ଧ ମୁକ୍ତ-ଚିନ୍ତକମାନେ, ଯଥା-ରୋବର୍ଟ ଇଙ୍ଗରସୋଲ୍ ଏବଂ ବ୍ୟାଟ୍ରାଣ୍ଡ ରସେଲ ଧର୍ମ ନିରପେକ୍ଷ ଥିଲେ ।

**ଧର୍ମ -ଧର୍ମ ମଧ୍ୟରେ ସୁସଙ୍ଗତଃ** ବିଶ୍ୱରେ ବିଭିନ୍ନ ପ୍ରକାର ଧର୍ମ ଅଛି । ପ୍ରତ୍ୟେକ ଧର୍ମ ନିଜର ମତବାଦ, ଧର୍ମପୁସ୍ତକ, ସାଧୁସନ୍ଥ ଓ ଲକ୍ଷ୍ୟ ଇତ୍ୟାଦି ପାଇଁ ଅଦ୍ୱିତୀୟ । ଧର୍ମ-ଧର୍ମ ମଧ୍ୟରେ ଥିବା ଏହି ତଫାତ୍ ଗୁଡ଼ିକ ପାଇଁ ଅତୀତରେ ବହୁତ ପ୍ରକାର ସଂଘର୍ଷ ଦେଖାଯାଇଛି । ଅଧୁନା, ଧର୍ମ-ଧର୍ମ ଭିତରେ ଥିବା ମତବାଦ, ପ୍ରଥା, ପୁସ୍ତକ ଏବଂ ଲକ୍ଷ୍ୟ ଇତ୍ୟାଦି ମଧ୍ୟରେ ସଙ୍ଗତି ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରାଯାଉଛି । ଏହି ଚେଷ୍ଟାକୁ ଧର୍ମ-ଧର୍ମ ମଧ୍ୟରେ ସଙ୍ଗତି କୁହାଯାଏ ।

**ମାଷ୍ଟର :** ବିଶ୍ୱ-ବିଦ୍ୟାଳୟ ଦ୍ୱାରା ପ୍ରଦତ୍ତ ଗୋଟିଏ ସ୍ନାତକୋତ୍ତର ଉପାଧି

**ଜାତୀୟତା :** ଆମ ସମସ୍ତଙ୍କର ଏକ ଭାବନା ଅଛି ତାହା ହେଉଛି ଆମେମାନେ ଭାରତୀୟ । ଦେଶ ସମ୍ବନ୍ଧରେ ଥିବା ଆମର ଐକ୍ୟ ଭାବନା ହେଉଛି ଜାତୀୟ ଏକତ୍ୱ । ଆମର ବହୁ ପରିଚୟ ମଧ୍ୟରେ ଏହା ଅନ୍ୟତମ । ଆମର ଅନ୍ୟ ପରିଚୟ ଭିନ୍ନ ପ୍ରକାର ହୋଇପାରେ ।

ପୁଅ/ଝିଅ (ଲିଙ୍ଗ ଏକତ୍ତ୍ୱ),

ଛାତ୍ର/ଶିକ୍ଷକ (ବୃତ୍ତି ସମ୍ବନ୍ଧୀୟ ଏକତ୍ତ୍ୱ),

ହିନ୍ଦୁ/ମୁସ୍‌ଲିମ୍/ଖ୍ରୀଷ୍ଟିଆନ୍ (ଧର୍ମ ସମ୍ବନ୍ଧୀୟ ଏକତ୍ତ୍ୱ) ଇତ୍ୟାଦି

**ବିଦେଶୀ ଭାରତୀୟ :** ପୈତୃକ ଭିଟାରୁ ବହୁ ଦୂରରେ ବସବାସ କରୁଥିବା ଜନସାଧାରଣଙ୍କୁ କୁହାଯାଏ ।

**ପୃଷ୍ଠା-୪୨**

**ଆମନ୍ତ୍ରଣ :** କୌଣସି ବ୍ୟକ୍ତିପାଖକୁ ଯାଇ ସମ୍ଭାଷଣ କରିବା

**ନିଷେଧ :**

ସାମାଜିକ ପ୍ରଥାଦ୍ୱାରା ନିଷେଦ୍ଧ ବା ନିର୍ବାରିତ କୌଣସି ବ୍ୟକ୍ତି ବା ପଦାର୍ଥକୁ ପବିତ୍ର ବା ଅଭିଶପ୍ତ ବୋଲି ଅଲଗା କରି ରଖିବା କାର୍ଯ୍ୟ ବା ପଦ୍ଧତି ।

**ପୃଷ୍ଠା-୪୩**

**ପ୍ରୋମିଥିୟସ୍ :** ଗ୍ରୀକ୍ କିଂବଦନ୍ତୀରେ ବର୍ଣ୍ଣିତ ଗୋଟିଏ ଚରିତ୍ର । ସେ ମାଟିରୁ ମଣିଷକୁ ସୃଷ୍ଟି କରିଛନ୍ତି

ବୋଲି ବିଶ୍ୱାସ କରାଯାଏ । ମଣିଷର ବ୍ୟବହାର ପାଇଁ ସେ ସ୍ୱର୍ଗରୁ ଅଗ୍ନିକୁ ଗୁପ୍ତଭାବରେ ଆଣିଥିଲେ । ଏହାଦ୍ୱାରା ସଭ୍ୟତା ଏବଂ ଉନ୍ନତି ସମ୍ଭବ ହେଲା । ମାନବଜାତୀର ରକ୍ଷକ ବୋଲି ସେ ସର୍ବଜନ-ବିଦିତ । ସେ ବୁଦ୍ଧି ଓ ସାହସର ପ୍ରତୀକ ଅଟନ୍ତି ।

**ସକ୍ରେଟିସ୍ (469-399BC):** ସେ ଗ୍ରୀକ୍‌ର ଜଣେ ଦାର୍ଶନିକ । ପାଶ୍ଚାତ୍ୟ ଦର୍ଶନର ସେ ମଧ୍ୟ ପ୍ରତିଷ୍ଠାତା । ଗ୍ରୀକ୍ ଦେଶର ଯୁବକମାନଙ୍କ ଉପରେ ତାଙ୍କର ଥିବା ବିପୁଳ ପ୍ରଭୁତ୍ୱ ପାଇଁ ତାଙ୍କୁ ହତ୍ୟା କରାଯାଇଥିଲା ।

**ଉପାସନା ଗୃହ :**

ମନ୍ଦିର ମଧ୍ୟରେ ଥିବା ପବିତ୍ର ସ୍ଥଳ ଯେଉଁଠାରେ ଦେବତାଙ୍କର ପ୍ରତିମୂର୍ତ୍ତିସ୍ଥାପିତ ହୁଏ ।

**ଅଲିମ୍ପିଆ :**

ପ୍ରାଚୀନ ଗ୍ରୀସ୍‌ର ଏଲିସ୍ (Elis)ଠାରେ ଥିବା ପବିତ୍ର ସ୍ଥାନ ଯେଉଁଠାରେ ଖ୍ରୀଷ୍ଟପୂର୍ବ ୮ରୁ ଖ୍ରୀଷ୍ଟପୂର୍ବ ୪ ମଧ୍ୟରେ ଅଲିମ୍ପିକ୍ ଖେଳର ଆୟୋଜନ କରାଯାଇଥିଲା ।

**ଏକାଡ଼େମିଆ :**

ଏଥେନସ୍ ସହରର ବାହାରେ ଥିବା ଏକ ପରିବେଷ୍ଟିତ ସ୍ଥଳ, ଯାହା ସକ୍ରେଟିସ୍‌ଙ୍କ ଶିଷ୍ୟ ପ୍ଲାଟୋଙ୍କ ଦ୍ୱାରା ଶିକ୍ଷଣ ପାଇଁ ବ୍ୟବହୃତ ହେଉଥିଲା । ଏହା ଏକ ପବିତ୍ର ସ୍ଥଳ ଏବଂ ଏହାକୁ ଗ୍ରୀକ୍‌ର ଦେବୀ ଏଥେନାଙ୍କ ଉଦ୍ଦେଶ୍ୟରେ ସମର୍ପିତ କରାଯାଇଛି ।

**ପୃଷ୍ଠା-୪୪**

**Cyclotron (ସାଇକ୍ଲୋଟ୍ରୋନ୍) :**

ଆମେରିକାର ବାର୍କ୍ଲେ ସହରରେ ଥିବା କାଲିଫର୍ଣ୍ଣିଆ ବିଶ୍ୱ-ବିଦ୍ୟାଳୟର ବୈଜ୍ଞାନିକ Ernest Lawrence ଙ୍କ ଦ୍ୱାରା ଆବିଷ୍କୃତ । ପଦାର୍ଥରେ ଥିବା ଅତି କ୍ଷୁଦ୍ର କଣିକା, ଯଥା-ପ୍ରୋଟନ ଏବଂ ନିୟୁଟ୍ରନ କଣିକାମାନଙ୍କୁ ତୀବ୍ର ଗତିରେ ଏହା ମଧ୍ୟ ଦେଇ ଗତିଶୀଳ କରାଯାଇ ଲକ୍ଷ୍ୟ ଭେଦ କରାଯାଏ । ଆଣବିକ ପରିକ୍ଷଣ ପାଇଁ ଏହା ଦରକାରୀ ।

**ଅନୁବଂଶ ବିଜ୍ଞାନ :** ବଂଶାନୁକ୍ରମିକ ବୈଜ୍ଞାନିକ ଧାରଣା ।

**କ୍ଲୋନ୍ :**

ମୂଳ ଜୀବର ପ୍ରତିରୂପଥିବା ଗୋଟିଏ ଜୀବ ଯାହାର ଆନୁବଂଶିକ ଉପାଦାନ ମୂଳ ଜୀବ ସହିତ ସମାନ ।

**Black hole :** ମହାକାଶରେ ଅବସ୍ଥିତ ଅଞ୍ଚଳ ଯେଉଁଠାରେ ମାଧ୍ୟାକର୍ଷଣ ଶକ୍ତି ଏତେ ଶକ୍ତିଶାଳୀ ଯେ ଏହି ଅଞ୍ଚଳରେ ଯେ କୌଣସି ବସ୍ତୁ ପହଞ୍ଚିଲେ ଏହା ସେହି ବସ୍ତୁକୁ ଶୋଷଣ କରିନିଏ । ଏପରିକି ସୂର୍ଯ୍ୟ ରଶ୍ମି ଏହା ମଧ୍ୟରୁ ବାହରି ପାରେ ନାହିଁ ।

**ରାଷ୍ଟ୍ରୀୟ ପରିଷଦ :** ସମାଜର ଗୁଣୀ ଓ ଜ୍ଞାନୀ ବ୍ୟକ୍ତିମାନେ ଏହାର ସଦସ୍ୟ । ପ୍ରାଚୀନ ରୋମରୁ ଏହାର ଉତ୍ପତ୍ତି ।

**ସୈନ୍ୟସାମନ୍ତ :**

ବିଭିନ୍ନ ଅସ୍ତ୍ର-ଶସ୍ତ୍ରରେ ସଜ୍ଜିତ ଯୋଦ୍ଧା ଯିଏ ବିଭିନ୍ନ ପ୍ରାଣୀ, ଦୋଷୀ ବ୍ୟକ୍ତି ଏବଂ ଅନ୍ୟ ଯୋଦ୍ଧା ମାନଙ୍କ ସାଥିରେ ଯୁଦ୍ଧ କରନ୍ତି । ଏହା ପ୍ରାଚୀନ ରୋମର ଜନସାଧାରଣଙ୍କ ଆନନ୍ଦ-ଉଲ୍ଲାସ ପାଇଁ ଅନୁଷ୍ଠିତ ହେଉଥିଲା ।

**ପୃଷ୍ଠା–୪୬**

**ଭବିଷ୍ୟତ ବକ୍ତା :**

ଜଣେ ବ୍ୟକ୍ତି ଯିଏ ଭବିଷ୍ୟତ ବିଷୟରେ କହିପାରେ । ଯିଏ ବିଶ୍ୱର ଅନ୍ତ ବିଷୟରେ ଭବିଷ୍ୟତ ବାଣୀ କହିପାରେ ।

**ରୋସ୍ ହାସନାହ :** ଜିଉସ୍ ନବବର୍ଷ । ପ୍ରତିବର୍ଷ ସେପ୍ଟେମ୍ବର ମାସରେ ଅନୁଷ୍ଠିତ ହୁଏ ।

**ୟୋମ୍‌କିପୁର :** ଜିଉସ୍ ମାନଙ୍କର ପବିତ୍ର ଦିନ । ସିନାଗଗ୍‌ରେ ଏହିଦିନ ସେମାନେ ପ୍ରାର୍ଥନା କରି କଟାଇଥାନ୍ତି । (ସିନାଗଗ୍ ହେଉଛି ଜିଉସ୍‌ମାନଙ୍କ ମନ୍ଦିର)

**ପାସଓଭର୍ ସେଡେର୍ :**

ପାସଓଭର୍ ପର୍ବର ପ୍ରଥମ ଦିନ । ଜିଉସ୍ ଇତିହାସ ବର୍ଣ୍ଣନା କରେ ଯେ ସେମାନଙ୍କର ଭଗବାନ 'ଜିହୋଭା' ସେମାନଙ୍କୁ ଇଜିପ୍ଟରୁ ଇଜ୍‌ରାଏଲକୁ ନେତୃତ୍ୱ ଦେଇ ନେଇଯିବା ପାଇଁ ମୋଜେସ୍‌କୁ ନିର୍ଦ୍ଦେଶ ଦେଲେ । ବିଶ୍ୱ ଇତିହାସରେ ଏହା ଇହୁଦୀମାନଙ୍କର ସମୂହ ବହିର୍ଗମନ ଦୃଷ୍ଟାନ୍ତ । ଏହି ସମୁହ ବହିର୍ଗମନକୁ ପାସଓଭର୍ କୁହାଯାଏ । ଏହି ବହିର୍ଗମନକୁ ପାଳନ କରିବା ପାଇଁ ଇହୁଦୀମାନେ ପାସଓଭର୍ ପର୍ବ ପାଳନ କରନ୍ତି । ଇହୁଦୀମାନେ ଏହି ଉତ୍ସବ ଅବସରରେ ମୋଜେସ୍‌ଙ୍କର ଏବଂ ବହିର୍ଗମନର ଇତିହାସ ଉଚ୍ଚ ସ୍ୱରରେ ପାଠ କରନ୍ତି । ପରିବାରର ସଦସ୍ୟମାନେ ଏକତ୍ରିତ ହୋଇ ପ୍ରାର୍ଥନା କରନ୍ତି ଏବଂ ଭୋଜନ କରନ୍ତି ।

**ଜେରୁଜେଲମ୍:** ଇହୁଦୀ, ଖ୍ରୀଷ୍ଟିୟାନ ଏବଂ ମୁସଲମାନଙ୍କ ପାଇଁ ଏକ ପବିତ୍ର ସହର । ବର୍ତ୍ତମାନ ଏହା ଇଜରାଏଲର ରାଜଧାନୀ ।

**ପୃଷ୍ଠା–୪୭**

**ସଂଘ :** ବୌଦ୍ଧ ଭିକ୍ଷୁକମାନଙ୍କର ଧର୍ମଗୋଷ୍ଠୀ ।

**ଧର୍ମ–** ସମଗ୍ର ବିଶ୍ୱ ଯେଉଁ ନିୟମଦ୍ୱାରା ଆଧାରିତ ତାହା ଧର୍ମ। ଯାହାଦ୍ୱାରା ଜନସାଧାରଣଙ୍କ ନୈତିକତାରେ ପବିତ୍ରତା ଏବଂ ପରିବର୍ତ୍ତନ ଆସେ ତାହାକୁ ମଧ୍ୟ ଧର୍ମ କୁହାଯାଏ ।

**ସତ୍ୟ:** ବୁଦ୍ଧ ୪ଟି ବାଣୀ ଦ୍ୱାରା ତାଙ୍କର ଉପଦେଶ ଦେଇଥିଲେ ।

୧. ପାର୍ଥିବ ଜଗତରେ ଦୁଃଖ ଯନ୍ତ୍ରଣା ରହିଛି ।

୨. ଦୁଃଖ ଯନ୍ତ୍ରଣାର କାରଣ ରହିଛି ।

୩. ଦୁଃଖ ଯନ୍ତ୍ରଣାର ପରିସମାପ୍ତି ଅଛି ।

୪. ଦୁଃଖ ଯନ୍ତ୍ରଣାର ପରିସମାପ୍ତି ପାଇଁ ଗୋଟିଏ ପଥ ଅଛି ।

**ନିର୍ବାଣ -**ବୌଦ୍ଧଧର୍ମ ମତ ଅନୁସାରେ ଦୁଃଖ ଯନ୍ତ୍ରଣାରୁ ମୁକ୍ତ ହେବା ଅବସ୍ଥାକୁ ବୁଝାଏ ।

**ପୃଷ୍ଠା–୪୮**

**ଦୀକ୍ଷା:** ଯାହାକି, ଜଣେ ବ୍ୟକ୍ତିଙ୍କୁ ଦୀକ୍ଷିତ କରି ବିଶେଷ ଭାବରେ ଉପାଦେୟ କରିଥାଏ ।

**ଇଭ୍‌ମାରିଆ–** ଲାଟିନ୍‌ଭାଷାରେ ''ମା' ମେରିଙ୍କର ଜୟ ହେଉ'' **ହଲ୍ଲେ ଲୁଯାହା–** ଯଥାର୍ଥ ''ଜୟ'' କିମ୍ବା

''ସଫଳତା'' ହିବ୍ରୁ ଭାଷାରେ ଯିଶୁ ଖ୍ରୀଷ୍ଟ ବ୍ୟବହାର କରୁଥିଲେ ।

**ମାର୍ଟିନ୍‌ଲୁଥର :** (୧୪୮୩-୧୫୪୬) ଜଣେ ଜର୍ମାନ ସନ୍ୟାସୀ ଥିଲେ, ସେ ଖ୍ରୀଷ୍ଟଧର୍ମରେ ସଂସ୍କାର ଆଣିଥିଲେ । ସେ ପ୍ରଥମେ ବାଇବେଲକୁ (ଯେଉଁଟା କି ପ୍ରକୃତରେ ହିବ୍ରୁ ଭାଷାରେ ଲେଖାଥିଲା) ଆଞ୍ଚଳିକ ଭାଷାରେ ଅନୁବାଦ କରିଥିଲେ ।

ପୃଷ୍ଠା-୪୯

**କନ୍‌ଫ୍ୟୁସିୟସ୍‌-** ସେ ଜଣେ ଚୀନର ଦାର୍ଶନିକ, ଭାବୁକ ଓ ରାଜନୀତିଜ୍ଞ ଥିଲେ ।

ସେ ''କନଫ୍ୟୁସିୟନିଜିମ୍'' ଧାର୍ମିକ ଦର୍ଶନ ଗଠନ କରିଥିଲେ । ଏହା ଚୀନର ପାରମ୍ପରିକ ମୌଳିକ ଧାର୍ମିକ ଦର୍ଶନ ଓ ସାଧାରଣ ବିଶ୍ୱାସ ଉପରେ ଆଧାରିତ ଥିଲା ।

**ପୃଷ୍ଠା-୫୦**

**ଦେବଦୂତ ପରି ମୁନିରଷିମାନେ :** ପ୍ରକୃତରେ ଦେବଦୂତର ଆକ୍ଷରିକ ଅର୍ଥ ହେଉଛି ''ଅଗ୍ନିରେ ପ୍ରଜ୍ୱଳିତ ଅବସ୍ଥା ।'' ଦେବଦୂତ ନାମ ହେଉଛି ଏକ ସର୍ବୋଚ୍ଚ ସ୍ଥାନ ଯାହା ଖ୍ରୀଷ୍ଟଧର୍ମରେ ବ୍ରହ୍ମବିଦ୍ୟା ବ୍ରହ୍ମତତ୍ତ୍ୱରେ ଶ୍ରେଣୀବଦ୍ଧ ଭାବରେ ବର୍ଣ୍ଣିତ । ଏହା ହିନ୍ଦୁଧର୍ମର ''ସପ୍ତର୍ଷି'' ଶବ୍ଦ ସଦୃଶ । ତେଣୁ ଦେବଦୂତ ଜଣେ ବିଜ୍ଞ ଋଷି ତାଙ୍କର ଖ୍ୟାତି ଅତି ମାତ୍ରାରେ ସର୍ବୋଚ୍ଚ ସ୍ଥାନରେ ପ୍ରତିପାଦିତ ହୋଇଛି ।

**ବୋଧିବୃକ୍ଷ :** ଏହା ବୁଦ୍ଧଗୟା ଠାରେ ଅବସ୍ଥିତ । ଯେଉଁ ଗଛମୂଳେ ଭଗବାନ ବୁଦ୍ଧ ଜ୍ଞାନାଲୋକ ପ୍ରାପ୍ତି ହୋଇଥିଲେ ।

**ପୃଷ୍ଠା-୫୧**

**ସନାତନ ଧର୍ମ -**ହିନ୍ଦୁ ଧର୍ମର ଅନ୍ୟ ସଂଜ୍ଞା ।

**ବିଭିନ୍ନ ପଦାର୍ଥର ଏକତ୍ରି କରଣ-** ବିଭିନ୍ନ ଉତ୍ସରୁ ସଂଗୃହିତ ଖଣ୍ଡ ଖଣ୍ଡ ବିଭିନ୍ନ ପଦାର୍ଥର ସମ୍ମିଶ୍ରଣ ।

**ପୃଷ୍ଠା-୫୩**

**ଇଲେକ୍‌ଟ୍ରନ୍ :** ସୂକ୍ଷ୍ମାଣୁ - ପରମାଣୁର ଏକ କ୍ଷୁଦ୍ରତମ ଅଂଶ । ଏହା ଏକ ବିଯୁକ୍ତାତ୍ମକ/ ଋଣାତ୍ମକ ବୈଦ୍ୟୁତିକ କଣିକା ଏବଂ ଏହା ପରମାଣୁର କେନ୍ଦ୍ରୀୟ ଅଂଶ ଚାରିପଟେ ଘୁରିବୁଲନ୍ତି । ଜେ.ଜେ ଥମ୍‌ସନ୍ ଏହାକୁ ୧୮୯୭ରେ ଉଦ୍ଭାବନ କରିଥିଲେ ।

**ପ୍ରୋଟନ୍ :** ପରମାଣୁର ଅନ୍ୟ ଏକ କ୍ଷୁଦ୍ରତମ ଅଂଶ । ଏହା ଯୁକ୍ତାତ୍ମକ ବୈଦ୍ୟୁତିକ କଣିକା । ଏହା ନାଭିକେନ୍ଦ୍ର ମଧ୍ୟଭାଗରେ ଅବସ୍ଥାନ କରିଥାଏ । ଏହା ୧୯୨୦ ମସିହାରେ ଇର୍‌ନେଷ୍ଟ ରଦରଫୋର୍ଡ୍‌ଙ୍କ ଦ୍ୱାରା ଉଦ୍‌ଭାବନ ହୋଇଥିଲା ।

**ନିଉଟ୍ରନ୍ :** ପରମାଣୁର ଏହା ଏକ ଅନ୍ୟ କ୍ଷୁଦ୍ରତମ କଣିକା । ଏହା କୌଣସି ବୈଦ୍ୟୁତିକ ପ୍ରଭାର ପରିବହନ କରେ ନାହିଁ ଏବଂ ନାଭିକେନ୍ଦ୍ର ଭିତରେ ଅବସ୍ଥାନ କରିଥାଏ । ଏହା ୧୯୩୨ ମସିହାରେ ଜେମ୍‌ସ୍ ଚାଡ୍‌ଉଇକ୍‌ଙ୍କ ଦ୍ୱାରା ଉଦ୍ଭାବନ ହୋଇଥିଲା ।

**କ୍ୱାର୍କ :** ଏହା ଏକ ମୌଳିକ ଅଣୁ । ଆମ୍ଭେ ଜାଣିଛେ ସମସ୍ତ ବସ୍ତୁ ଏକ ମୌଳିକ ପରମାଣୁ ଦ୍ୱାରା ଗଠିତ । ପୁନଃ ପରମାଣୁଗୁଡ଼ିକ ଇଲେକ୍‌ଟ୍ରନ୍, ପ୍ରୋଟନ୍ ଏବଂ ନିଉଟ୍ରନ୍ ଦ୍ୱାରା ଗଠିତ । ଏହି କ୍ୱାର୍କ କେତେକ ଅଣୁ ଯାହାକି ଇଲେକ୍‌ଟ୍ରନ୍, ପ୍ରୋଟନ୍ ଏବଂ ନିଉଟ୍ରନ୍‌ଗୁଡ଼ିକୁ ତିଆରି କରିଥାଏ ।

## ଜଣେ ଉତ୍ତମ ଶିକ୍ଷାର୍ଥୀ ନିମନ୍ତେ ପ୍ରସ୍ତାବିତ ଦୈନନ୍ଦିନ କାର୍ଯ୍ୟ-ନିର୍ଘଣ୍ଟ ଏବଂ ଶୃଙ୍ଖଳା

କାର୍ଯ୍ୟ-ନିର୍ଘଣ୍ଟ ଓ ଶୃଙ୍ଖଳା ଛାତ୍ରଛାତ୍ରୀମାନଙ୍କ ବ୍ୟକ୍ତିତ୍ୱର ଏକ ଅଂଶ । ସେମାନଙ୍କ ଜୀବନରେ ଉଚ୍ଚତର 'ମୂଲ୍ୟ'ର ଆହରଣ ପାଇଁ ଓ ଶିକ୍ଷାକୁ ଫଳପ୍ରଦ କରିବା ପାଇଁ ଏହା ସେମାନଙ୍କୁ ସାହାଯ୍ୟ କରେ । ଜୀବନର ଭବିଷ୍ୟତ ଆପଣଙ୍କ ଦୈନନ୍ଦିନ କାର୍ଯ୍ୟ-ନିର୍ଘଣ୍ଟ ଓ ସମୟର ସଦୁପଯୋଗ ଉପରେ ନିର୍ଭର କରେ । ତେଣୁ ଶିକ୍ଷାର୍ଥୀମାନେ ନିଶ୍ଚିତ ଭାବରେ ଆନ୍ତରିକତା ସହିତ ଇଚ୍ଛୁକ ହୋଇ କାର୍ଯ୍ୟ-ନିର୍ଘଣ୍ଟ ପାଳନ କରିବା ଆବଶ୍ୟକ ।

**ନିମ୍ନରେ ବର୍ଣ୍ଣିତ ନିର୍ଦ୍ଦେଶାବଳୀଗୁଡ଼ିକୁ ଯତ୍ନପୂର୍ବକ ପଢ଼ ଏବଂ ନିଷ୍ଠାର ସହିତ ପାଳନ କର :**

**୧. ଶୀଘ୍ର ଶଯ୍ୟାତ୍ୟାଗ :** ଗୋଟିଏ ପ୍ରବାଦ ଅଛି– 'ଜଣେ ସହଳ ନିଦ୍ରା ତ୍ୟାଗ କରୁଥିବା ବ୍ୟକ୍ତି ପାହାଡ଼କୁ ମଧ୍ଯ ଘୁଞ୍ଚାଇ ପାରେ ।' ତେଣୁ, ତୁମେମାନେ ଭୋର ଘ୫.୩୦ ମିନିଟ୍ ସୁଦ୍ଧା ଅଥବା ତା' ପୂର୍ବରୁ ନିଦ୍ରା ତ୍ୟାଗ କରିବ । ଆଳସ୍ୟତା ଦୂର କରିବାରେ ଓ ଇଚ୍ଛା ଶକ୍ତିର ବିକାଶରେ ଏହା ତୁମର ସହାୟତା କରିବ ।

**୨. ନିତ୍ୟକର୍ମ ଓ ସ୍ନାନ :** ସକାଳର ନିତ୍ୟକର୍ମ, ଯଥା-ଗାଧୋଇବା ଇତ୍ୟାଦିରେ ଶୀଘ୍ର ଶଯ୍ୟାତ୍ୟାଗ ତୁମକୁ ସାହାଯ୍ୟ କରିବ । ତେଣୁ, ସକାଳେ ଘ୫.୩୦ ରୁ ଘ.୬.୦୦ ମଧ୍ୟରେ ଏହି ନିତ୍ୟକର୍ମ ପାଇଁ କିଛି ନିର୍ଦ୍ଦିଷ୍ଟ ସମୟ ରଖିବ ।

**୩. ଧ୍ୟାନ ଓ ପ୍ରାର୍ଥନା ଦ୍ୱାରା ଆଧ୍ୟାତ୍ମିକ 'ମୂଲ୍ୟ'ର ଅଭ୍ୟାସ :** ଆଧ୍ୟାତ୍ମିକତାର ଉନ୍ନତି ପାଇଁ ଜଣେ ଛାତ୍ର ବିଶେଷ ଭାବରେ ଯତ୍ନବାନ ହେବା ଆବଶ୍ୟକ । ପ୍ରାର୍ଥନା ଓ ଧ୍ୟାନ ତୁମ କାର୍ଯ୍ୟ-ନିର୍ଘଣ୍ଟର ଏକ ଅଭିନ୍ନ ଅଂଶ ହେବା ଦରକାର । ସକାଳର ପ୍ରାର୍ଥନା ଘ୬.୦୦ ରୁ ଘ୬.୩୦ମିନିଟ୍ ପର୍ଯ୍ୟନ୍ତ ଏବଂ ସନ୍ଧ୍ୟାରେ ଘ.୬.୩୦ ରୁ ଘ ୭.୦୦ ଭିତରେ ଅଧ ଘଣ୍ଟେ ପାଇଁ ରଖିବ ।

**୪. ଶାରୀରିକ ବ୍ୟାୟାମ :** ସ୍ୱାମୀ ବିବେକାନନ୍ଦ ଯୁବକମାନଙ୍କ ଶାରୀରିକ ଶକ୍ତିର ବିକାଶରେ ବିଶେଷ ଗୁରୁତ୍ୱ ଦେଇଛନ୍ତି । ସେ କହିଛନ୍ତି, 'ଆମର ଲୌହର ମାଂସପେଶୀ ଓ ଇସ୍ପାତର ସ୍ନାୟୁ ଆବଶ୍ୟକ । ସେ କହିଥିବା 'ମଣିଷ-ଗଠନ' ଶିକ୍ଷାର ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ସକାଳ ଘ ୬.୩୦ ରୁ ଘ୭.୦୦ଭିତରେ ବ୍ୟାୟାମ କରିବା ଏବଂ ସନ୍ଧ୍ୟା ଘ୫.୦୦ରୁ ଘ.୬.୦୦ ଭିତରେ ଖେଳକୁଦ, ସନ୍ତରଣ, ଯୋଗ ଇତ୍ୟାଦି କରିବା ଆବଶ୍ୟକ ।

**୫. ପରିଚ୍ଛନ୍ନତା ଓ ଶିଷ୍ଟତା :** ପ୍ରବାଦ ଅଛି -'ସ୍ୱଚ୍ଛତା ବଡ଼ ଧର୍ମ ଅଟେ ।' ତେଣୁ, ତୁମର ଚତୁଃପାର୍ଶ୍ୱ, ପଢ଼ାସ୍ଥାନ, ସ୍ନାନ ଗୃହ ଇତ୍ୟାଦି ପରିଷ୍କାର ରଖିବ ।

**୬. କର୍ମ ଦ୍ୱାରା ମାନସିକ ଉନ୍ନତି :** ପ୍ରତ୍ୟେକ କାର୍ଯ୍ୟ ପବିତ୍ର । ଉଦାହରଣ ସ୍ୱରୂପ ତୁମେ ତୁମର ପୋଷାକ - ପରିଚ୍ଛଦ ପରିଷ୍କାର କରିବ । ବଗିଚାରେ କିଛି ସମୟ କାମ କରିବ; ଗଛରେ ପାଣି ଦେଇ ବଗିଚା ପରିଷ୍କାର ରଖିବ । ନିଜକୁ କାର୍ଯ୍ୟରେ ଅନ୍ତର୍ଭୁକ୍ତ କରିପାରିଲେ-ତୁମକୁ ଆନନ୍ଦ ମିଳିବ, ତୁମର କାର୍ଯ୍ୟକୌଶଳ ବୃଦ୍ଧି ପାଇବ; ତୁମର ମାନସିକ ସମାର୍ଥ୍ୟ ବଢ଼ିବ ଓ ତୁମେ ପରିଶ୍ରମର ମର୍ଯ୍ୟାଦା ବୁଝି ପାରିବ ।

**୭. ସମୟାନୁବର୍ତ୍ତିତା :** ସମୟାନୁବର୍ତ୍ତିତାକୁ ତୁମ କାର୍ଯ୍ୟ-ନିର୍ଘଣ୍ଟରେ ସର୍ବୋଚ୍ଚ ସ୍ଥାନ ଦିଆଯାଇଛି । କ) ଏହି ଏକମାତ୍ର 'ମୂଲ୍ୟ' ତୁମକୁ ଠିକ୍ ସମୟରେ ଠିକ୍ କର୍ମ କରିବା ପାଇଁ ପ୍ରୋତ୍ସାହନ ଦେବ । ଖ) ତୁମ ସମୟରେ ସଦୁପଯୋଗ କରିବାରେ ସାହାଯ୍ୟ କରିବ । ଗ) ତୁମର ଓ ଅନ୍ୟମାନଙ୍କର ମୂଲ୍ୟବାନ ସମୟକୁ ଅଯଥା ନଷ୍ଟ ହେବାରୁ ରୋକିବ । ଘ) ତୁମର ବ୍ୟକ୍ତିତ୍ୱର ବିକାଶରେ ସହାୟତା କରିବ ଓ ଜୀବନରେ ଆସୁଥିବା ବିଭିନ୍ନ ପ୍ରକାର ସୁଯୋଗର ସଦ୍‌ବ୍ୟବହାରରେ ସାହାଯ୍ୟ କରିବ ।

**୮. ଅଧ୍ୟୟନ ସମୟରେ ନୀରବତା ଅବଲମ୍ବନ :** ବିଦ୍ୟାର୍ଥୀମାନଙ୍କ ଶୈକ୍ଷଣିକ ଉନ୍ନତି ନିର୍ଭର କରେ – କ) ମନର ଏକାଗ୍ରତା ଉପରେ ଖ) ଅଧ୍ୟୟନ ସମୟରେ ନୀରବତା ଉପରେ । ତେଣୁ ଏକା ପଢ଼ିବା ସମୟରେ ଅଥବା ସାଙ୍ଗ-ସାଥିଙ୍କ ମେଳରେ ପଢ଼ିବା ସମୟରେ ନୀରବତା ରକ୍ଷା କରିବା ଏକାନ୍ତ ଆବଶ୍ୟକ ।

**୯. ଗୁରୁଜନମାନଙ୍କ ପ୍ରତି ଆଜ୍ଞାବହତା ଏବଂ ସେମାନଙ୍କର ନିର୍ଦ୍ଦେଶ ପାଳନ :** ତୁମେମାନେ ଇଚ୍ଛାକୃତଭାବରେ ଗୁରୁଜନମାନଙ୍କର ଓ ଶିକ୍ଷକ-ଶିକ୍ଷୟିତ୍ରୀମାନଙ୍କର ଆଜ୍ଞାବହ ହେବା ଆବଶ୍ୟକ । ସେମାନଙ୍କର ନିର୍ଦ୍ଦେଶ ପାଳନ କଲେ ନିଶ୍ଚିତଭାବରେ ତୁମେମାନେ ସେମାନଙ୍କର ଅଭିଜ୍ଞତା ସମ୍ମିଳିତ ଜ୍ଞାନର ଅଧିକାରୀ ହେବ ।

**୧୦. ସାଧାରଣ ଶୃଙ୍ଖଳାର କେତୋଟି ନିୟମ :** ଶୃଙ୍ଖଳା ରକ୍ଷା କରିବାର ମୂଳ ଉଦ୍ଦେଶ୍ୟ ହେଉଛି ବ୍ୟକ୍ତିଗତ ଓ ଗୋଷ୍ଠିଗତ ଜୀବନକୁ ସୁବ୍ୟବସ୍ଥିତ କରିବା । ଶୃଙ୍ଖଳା ନିମ୍ନ କାର୍ଯ୍ୟ ପାଇଁ ସାହାଯ୍ୟ କରେ :

କ) ବ୍ୟକ୍ତିତ୍ୱର ବିକାଶ ପାଇଁ

ଖ) ଉଚ୍ଚତର 'ମୂଲ୍ୟ'ର ଅନ୍ତର୍ନିବେଶ ପାଇଁ

ଗ) ସମୟ ଓ ସମ୍ବଳର ସଦୁପୋଯୋଗ ପାଇଁ

ଘ) ଦୈନନ୍ଦିନ କାର୍ଯ୍ୟ-ନିର୍ଘଣ୍ଟର ସଠିକ୍ କ୍ରିୟାନ୍ୱୟନ ପାଇଁ

ଙ) ଶିକ୍ଷାକୁ ଫଳପ୍ରଦ କରିବା ପାଇଁ

# ସମୀକ୍ଷା ଓ ମତାମତ

**Hindustan Times** - Mar. 18, 2008 : ରାମକୃଷ୍ଣ ମିଶନ ଦ୍ୱାରା ପ୍ରକାଶିତ ଏହା ଏକ ଲୋକପ୍ରିୟ ପୁସ୍ତକ, ଯାହା ପରବର୍ତ୍ତୀ ପିଢ଼ିକୁ ଲକ୍ଷ୍ୟକରି ପ୍ରସ୍ତୁତ ହୋଇଛି । ବଡ଼ ହେଉଥିବା ପିଲାମାନେ ନିଜକୁ ଏବଂ ଭାରତର ସମାଜକୁ ଠିକ୍ ଭାବରେ ବୁଝିବାପାଇଁ ରାମକୃଷ୍ଣ ମିଶନ ବିବେକାନନ୍ଦ ୟୁନିଭରସିଟି (RKMVU) ସ୍କୁଲ ପିଲାମାନଙ୍କ ପାଇଁ ମୂଲ୍ୟବୋଧାତ୍ମକ ଗଳ୍ପଗୁଡିକ ରଚନା କରିଛି । ସତ୍ୟ, ପବିତ୍ରତା, ନିସ୍ୱାର୍ଥପରତା, ଉତ୍ସର୍ଗୀକୃତଭାବ, କଠିନକାର୍ଯ୍ୟ, ସର୍ବଧର୍ମ ପ୍ରତି ସମ୍ମାନ କରିବା ଇତ୍ୟାଦି ଗୁଣଦ୍ୱାରା ବିଦ୍ୟାର୍ଥୀମାନଙ୍କୁ ଅନୁପ୍ରାଣିତ କରିବା ପାଇଁ ଏହି ପୁସ୍ତକଟିକୁ ଏକ ଭିନ୍ନ ଲକ୍ଷ୍ୟ ନେଇ ରଚନା କରାଯାଇଛି ।

**The Statesman** - Mar. 18, 2008 : କୃତଜ୍ଞତା, ଶୃଙ୍ଖଳା, ସଦାଚାର, କଠିନ ପରିଶ୍ରମ, ପିତାମାତା, ଗୁରୁଜନ ଏବଂ ଶିକ୍ଷକଙ୍କ ପ୍ରତି କର୍ତ୍ତବ୍ୟବୋଧର ବିକାଶ ନିମିତ୍ତ, ରାମକୃଷ୍ଣ ମିଶନ-ବିଦ୍ୟାଳୟର ବିଦ୍ୟାର୍ଥୀମାନଙ୍କ ପାଇଁ ଅନେକ ମୂଲ୍ୟବୋଧ ଭିତ୍ତିକ ପୁସ୍ତକ ପ୍ରସ୍ତୁତ କରିଛି ।

**THE HINDU** - Sep. 20, 2007 : ରାମକୃଷ୍ଣ ମିଶନ, ମୂଲ୍ୟବୋଧ ଶିକ୍ଷା ପ୍ରକଳ୍ପ ଅଧିନରେ ମୂଲ୍ୟବୋଧାତ୍ମକ ଶିକ୍ଷାକୁ ଆକର୍ଷଣୀୟ ଏବଂ ଭାବର ଆଦାନ ପ୍ରଦାନ କରି ଅନେକଗୁଡ଼ିଏ ପୁସ୍ତକ ରଚନା କରିଛି । ଏହି ପୁସ୍ତକଗୁଡ଼ିକୁ ବିଦ୍ୟାର୍ଥୀ, ଶିକ୍ଷକ, ଅଭିଭାବକ ଏବଂ ମୂଲ୍ୟବୋଧାତ୍ମକ ଶିକ୍ଷାର ପରିସରକୁ ଲକ୍ଷ୍ୟ କରି ସରଳ ଭାବରେ ପ୍ରକାଶିତ କରିଛି ।

✍ ଏହି ପୁସ୍ତକରେ ସରଳ ଭାବରେ ବର୍ଣ୍ଣିତ କାହାଣୀଗୁଡ଼ିକ ମୋର ଚିତ୍ତ ଆକର୍ଷଣ କରିଛି । ଏହା ମାଧ୍ୟମରେ ମୁଁ ଭାରତର ଓ ଏହାର ସାଂସ୍କୃତିକ ଐତିହ୍ୟ ବିଷୟରେ ଜାଣିଲି । ରାମଚନ୍ଦ୍ର ତାଙ୍କ ପିତାଙ୍କ କଥାକୁ ସମ୍ମାନ ଦେଇ ୧୪ ବର୍ଷ ବନଗାମୀ ହେଲେ । ଏହି ଗଳ୍ପଟି 'ଶ୍ରଦ୍ଧା' ବିଷୟରେ ସାମିଲ କରାଯାଇପାରେ ।

**ସପ୍ତର୍ଷି ଗୋସ୍ୱାମୀ, ରାମହରିପୁର**
**(ଅରୁଣୋଦୟ)**

ପ୍ରତ୍ୟେକ ବିଷୟରେ ବର୍ଣ୍ଣିତ କାହାଣୀସହ ଚିତ୍ର ମଧ୍ୟ ଦିଆଯାଇଛି । ଫଳରେ, ଯେଉଁମାନେ ଭଲ ଇଂରାଜୀ ବୁଝିପାରନ୍ତି ନାହିଁ, ସେମାନେ ଫଟୋକୁ ଦେଖି ବିଷୟବସ୍ତୁର ଭାବନାକୁ ଧାରଣା କରି ପାରିବେ ।

**ରଣଜିତ୍ ଦାସ, ରାମହରିପୁର**
**(ପଥପ୍ରଦର୍ଶକ ଆଲୋକ)**

✪ ଆମ ବିଦ୍ୟାର୍ଥୀମାନଙ୍କ ଉପରେ 'SGVEP' କାର୍ଯ୍ୟକ୍ରମ ଗଭୀର ପ୍ରଭାବ ପକାଇଛି । ବିଦ୍ୟାର୍ଥୀମାନଙ୍କ ମନୋଭାବରେ ହେଉଥିବା ଉଲ୍ଲେଖନୀୟ ପରିବର୍ତ୍ତନ ଆମେ ଲକ୍ଷ୍ୟ କରିଛୁ । ସେମାନେ ପ୍ରଗାଢ ଭାବରେ ଅନୁପ୍ରାଣିତ ହୋଇଛନ୍ତି । ଏହା ଦ୍ୱାରା ବିଦ୍ୟାର୍ଥୀମାନେ ଆତ୍ମବିଶ୍ୱାସ ଲାଭ କରୁଛନ୍ତି ଯାହା ସମ୍ଭବତଃ ସ୍ୱାମୀ ବିବେକାନନ୍ଦଙ୍କ ଦୃଷ୍ଟିରେ ଶିକ୍ଷାର ଉଦ୍ଦେଶ୍ୟ ।

**ପ୍ରଧାନ ଶିକ୍ଷକ – ଜାଫୁଲି ଦେଶପ୍ରାଣ ହାଇସ୍କୁଲ, ପଶ୍ଚିମ ବଙ୍ଗ**

✪ ଆମ ଛାତ୍ରଛାତ୍ରୀମାନଙ୍କ ପାଇଁ 'SGVEP' କାର୍ଯ୍ୟକ୍ରମଟି ବହୁତ ଲାଭଦାୟୀ ହୋଇଛି କାରଣ ଏଥିରେ ଥିବା ଗଳ୍ପଗୁଡ଼ିକ ପ୍ରତିଦିନ ଜୀବନରେ ଅତ୍ୟନ୍ତ ପ୍ରେରଣାଦାୟୀ । ଏହି ଗଳ୍ପଗୁଡ଼ିକ ସାଧୁତା, ସତ୍ୟ, ଶ୍ରମର ମର୍ଯ୍ୟାଦା ଇତ୍ୟାଦି 'ମୂଲ୍ୟ'କୁ ପିଲାମାନଙ୍କ ଭିତରେ ଦୃଢ଼ଭାବରେ ଅନ୍ତର୍ନିବେଶ କରାଇବାରେ ସାହାଯ୍ୟ କରେ । ବିଦ୍ୟାର୍ଥୀମାନଙ୍କୁ ଜୀବନରେ ବଞ୍ଚିବାର କଳା ଶିଖାଇଥାଏ ।

**ଅଧ୍ୟକ୍ଷ – ସେଣ୍ଟ ଥୋମାସ୍ ଉଚ୍ଚ ବିଦ୍ୟାଳୟ, ସିଲଙ୍ଗ୍, ମେଘାଳୟ**

✪ 'SGVEP' କାର୍ଯ୍ୟକ୍ରମଟିକୁ ଆମ ବିଦ୍ୟାଳୟରେ ପ୍ରଚଳନ କରିବା ଫଳରେ ପିଲାମାନଙ୍କ ଆଚରଣରେ ହେଉଥିବା ପରିବର୍ତ୍ତନ ଆମେ ଲକ୍ଷ୍ୟ କରୁଛୁ । ସେମାନଙ୍କର ଶୃଙ୍ଖଳାଜ୍ଞାନ, ଆଚରଣରେ ଶୁଦ୍ଧତା ଏବଂ ନୈତିକତାର ସ୍ତର ବୃଦ୍ଧି ପାଇଛି । ସେମାନେ ସମାଜର କଲ୍ୟାଣ, ପରୋପକାର, ଇତ୍ୟାଦି ସାମାଜିକ ବିଷୟଗୁଡ଼ିକ ସମ୍ବନ୍ଧରେ ଆଲୋଚନା କରୁଛନ୍ତି । ଏହି କାର୍ଯ୍ୟକ୍ରମଟି ବିଶେଷ ଫଳପ୍ରଦ କାରଣ ଛାତ୍ରଛାତ୍ରୀମାନଙ୍କ ମନରେ ଏହା ଅସୀମ ଶକ୍ତି ଭରି ଦେଉଛି ।

**ଅଧ୍ୟକ୍ଷ – ଏନ୍.କେ.ଏମ୍. ପବ୍ଲିକ ଇଣ୍ଟର କଲେଜ୍, ଲକ୍ଷ୍ନୌ, ଉତ୍ତର ପ୍ରଦେଶ**

✪ 'SGVEP' କାର୍ଯ୍ୟକ୍ରମରେ ଯୋଗଦେବାପରେ ଅଧିକାଂଶ ଛାତ୍ରଛାତ୍ରୀ ଭଦ୍ର, ଅକପଟ ଓ ଶୃଙ୍ଖଳିତ ହେଉଛନ୍ତି । ଏଥିପାଇଁ ଯୋଗାଇ ଦିଆଯାଇଥିବା ପାଠ୍ୟ–ପୁସ୍ତକଗୁଡ଼ିକ ଅତ୍ୟନ୍ତ ଫଳପ୍ରଦ ।

**ପ୍ରଧାନ ଶିକ୍ଷୟିତ୍ରୀ– ବ୍ରିଜ୍‌ଫୋର୍ଡ୍ ସ୍କୁଲ୍, ରାଞ୍ଚି, ଝାରଖଣ୍ଡ**

✪ ଶିକ୍ଷା ଦ୍ୱାରା ହିଁ ମାନବର ସମ୍ପୂର୍ଣ୍ଣ ଉନ୍ନତି ସମ୍ଭବ । 'ମୂଲ୍ୟବୋଧ ଶିକ୍ଷା' ବିନା ଏହା ଅସମାପ୍ତ । ସାଧୁତା, ଅକପଟତା, ଆଜ୍ଞାବହତା, ସମୟାନୁବର୍ତ୍ତିତା ଇତ୍ୟାଦି ଗୁଣଗୁଡ଼ିକର ଅନ୍ତର୍ନିବେଶ କରିବାରେ 'ମୂଲ୍ୟବୋଧ ଶିକ୍ଷା' ସାହାଯ୍ୟ କରେ । ରାମକୃଷ୍ଣ ମିଶନରୁ ଯୋଗାଇ ଦିଆଯାଇଥିବା ପୁସ୍ତକଗୁଡ଼ିକ ଆମ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ଉପରୋକ୍ତ ମୂଲ୍ୟ ପ୍ରଦାନ କରୁଛି । ଏହି ପୁସ୍ତକମାନଙ୍କରେ ଥିବା ଗଳ୍ପଗୁଡ଼ିକ ନିଶ୍ଚିତ ଭାବରେ ପିଲାମାନଙ୍କର ବ୍ୟକ୍ତିତ୍ୱକୁ ପ୍ରଭାବିତ କରିବ ।

ଆମ ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କୁ ଆଧ୍ୟାତ୍ମିକ, ନୈତିକ ଓ କଳାତ୍ମକ ମୂଲ୍ୟ ପ୍ରଭୃତି ଶିକ୍ଷା ଦିଆଯାଏ । ରାମକୃଷ୍ଣ ମିଶନ ପକ୍ଷରୁ ଯୋଗାଇ ଦିଆଯାଇଥିବା ପୁସ୍ତକଗୁଡ଼ିକ ନିଶ୍ଚିତ ଭାବରେ ଏହି ମୂଲ୍ୟଗୁଡ଼ିକର ବିକାଶରେ ସେମାନଙ୍କୁ ସହାୟକ ହେବ । ଏହି ପୁସ୍ତକମାନଙ୍କରେ ଥିବା ଗଳ୍ପଗୁଡ଼ିକରେ ଯୁକ୍ତିଯୁକ୍ତତାର ବିକାଶ, ମନର ଏକାଗ୍ରତା, ହୃଦୟର ବିସ୍ତାର, ଶିଷ୍ଟାଚାର, ମନରେ ଜାତୀୟତାର ଭାବ ଓ ଧର୍ମଗୁଡ଼ିକର ସମନ୍ୱୟ ଭଳି ମହତ୍ତ୍ୱପୂର୍ଣ୍ଣ ଦିଗଗୁଡ଼ିକ ବର୍ଣ୍ଣିତ ହୋଇଛି । କ'ଣ ଠିକ୍, କ'ଣ ଭୁଲ ବିଚାର କରିବାରେ ଏହି 'ମୂଲ୍ୟ ବୋଧ ଶିକ୍ଷା' ଆମ ପିଲାମାନଙ୍କୁ ସକ୍ଷମ କରାଏ ।

**ଶିକ୍ଷକ ବୃନ୍ଦ – ଜବାହାର ନବୋଦୟ ବିଦ୍ୟାଳୟ, ଖୁର୍ଦ୍ଧା, ଓଡ଼ିଶା**

# ତୁମ ନିଜ ବିଷୟରେ କିଛି

| ପାସପୋର୍ଟ ସାଇଜର<br>ଫଟୋ ଲଗାଅ |
|---|

ନାମ ----------------------------------------

ସ୍କୁଲ ----------------------------------------

ଡାକ ଠିକଣା ----------------------------------------

----------------------------------------

--------------------ପିନ୍ କୋଡ୍ ------------

ତୁମେ ଭଗବାନଙ୍କ ଉପରେ ଭରସା ରଖ କି ? ନିୟମିତ ପ୍ରାର୍ଥନା କର କି ?

----------------------------------------

ତୁମ ଜୀବନର ଲକ୍ଷ୍ୟ : ----------------------------------------

ତୁମର ଆଦର୍ଶ ବ୍ୟକ୍ତିମାନେ : ----------------------------------------

ତୁମର ପ୍ରିୟ କାର୍ଯ୍ୟ : ----------------------------------------

ତୁମେ ଘରେ କିପରି ସମୟ ବିତାଅ ?----------------------------------------

----------------------------------------

ତୁମ ଜୀବନକୁ ଗଭୀର ଭାବରେ ପ୍ରଭାବିତ କରିଥିବା ଗୋଟିଏ ଘଟଣା :

----------------------------------------

----------------------------------------

ଏହି ପୁସ୍ତକର ଉନ୍ନତି ପାଇଁ ତୁମର ମତାମତ : ----------------------------------------

----------------------------------------

----------------------------------------

(ଯଦି ଆବଶ୍ୟକ ପଡେ ଅନ୍ୟ ଏକ କାଗଜ ବ୍ୟବହାର କର)

ମୂଳ ପୁସ୍ତକରୁ ଏହି ପୃଷ୍ଠାଟିକୁ କାଟି ପଠାଅ ।
ରାମକୃଷ୍ଣ ମିଶନ
ବିବେକାନନ୍ଦ ମାର୍ଗ, ଭୁବନେଶ୍ୱର
ପିନ – ୭୫୧୦୦୨ (ଓଡ଼ିଶା)

ଦସ୍ତଖତ ----------------

ତାରିଖ ----------------

# ଏହି ପୁସ୍ତକ ବିଷୟରେ ଆପଣମାନଙ୍କର ଅଭିମତ

ପ୍ରିୟ ବିଦ୍ୟାର୍ଥୀ ବନ୍ଧୁଗଣ, ଏହି ମୂଲ୍ୟବୋଧାତ୍ମକ ପୁସ୍ତକ ସମ୍ବନ୍ଧରେ ନିମ୍ନସ୍ଥ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଗୁଡ଼ିକର ଉତ୍ତର ଦେବା ପାଇଁ ତୁମମାନଙ୍କୁ ଆମର ବିଶେଷ ଅନୁରୋଧ ।

୧. କେଉଁଟି ଠିକ୍ ଓ କେଉଁଟି ଭୁଲ୍ ତୁମେ କିପରି ନିଷ୍ପତ୍ତି ନେବ ?

୨. ଶକ୍ତିର ବିକାଶ କିପରି ଘଟିବ ?

୩. ମନର ଏକାଗ୍ରତା କିପରି ବୃଦ୍ଧି କରିବ ?

୪. କିପରି ମୈତ୍ରୀଭାବ ବଢ଼ାଇବ, ସଫଳତା ପାଇବ ଓ ଆନନ୍ଦିତ ହେବ ?

୫. ମହାନ୍ ଗୁଣଗୁଡ଼ିକ କିପରି ବଢ଼ାଇବ ?

୬. ଆମ ମାତୃଭୂମି ପାଇଁ କିପରି ଜଣେ ଭଲ ଏବଂ ସୃଜନାତ୍ମକ ନାଗରିକ ହୋଇପାରିବ ?

ଏହି ପୁସ୍ତକର ପୁନଃ ପ୍ରକାଶନ ହେବ । କିନ୍ତୁ ତା ପୂର୍ବରୁ ଆମେ ତୁମମାନଙ୍କର ପ୍ରତିକ୍ରିୟା ଜାଣିବାକୁ ଚାହୁଁଛୁ ।

----------------------------------------------------------------
----------------------------------------------------------------
----------------------------------------------------------------
----------------------------------------------------------------
----------------------------------------------------------------
----------------------------------------------------------------
----------------------------------------------------------------

ଏହି ପୁସ୍ତକର କେଉଁ ଅଂଶ ଭଲ ଲାଗିଲା ଏବଂ କେଉଁ ଅଂଶ ଭଲ ଲାଗିଲା ନାହିଁ, ତଳେ ଲେଖ ।

----------------------------------------------------------------
----------------------------------------------------------------
----------------------------------------------------------------
----------------------------------------------------------------
----------------------------------------------------------------
----------------------------------------------------------------
----------------------------------------------------------------

ଆମେମାନେ ନିଶ୍ଚିତ ଯେ, ତୁମମାନଙ୍କ ପାଖରେ କିଛି ଆଦର୍ଶ ଗପ ଏବଂ ମଜା କଥା ଇତ୍ୟାଦି ଥିବ । ସେଗୁଡ଼ିକ ଗୋଟିଏ କାଗଜ ଫର୍ଦ୍ଦରେ ଲେଖି ଆମମାନଙ୍କ ପାଖକୁ ପଠାଅ । ଯଦି ସେଗୁଡ଼ିକ ପସନ୍ଦ ହୁଏ, ତେବେ ଆମର ପରବର୍ତ୍ତୀ ପ୍ରକାଶନରେ ତାହା ପ୍ରକାଶିତ ହେବ । ତୁମେ ଭଲ ଚିତ୍ର ଅଙ୍କନ କର କି ? ଯଦି କରୁଥାଅ, ଏକ A-4 କାଗଜରେ (210mmx297mm) ଏହି ପୁସ୍ତକରୁ କିଛି ଘଟଣାର ଚିତ୍ର ଅଙ୍କନ କରି ପଠାଅ । ମନୋନୀତ ହେଲେ ପରବର୍ତ୍ତୀ ପୁସ୍ତକରେ ତାହା ପ୍ରକାଶିତ ହେବ ।



ସ୍ୱାମୀ ବିବେକାନନ୍ଦଙ୍କ ମନ୍ଦିର, ବେଲୁଡ଼ ମଠ

ପାଶ୍ଚାତ୍ୟ ବିଜ୍ଞାନ ଏବଂ ଆମ ବେଦାନ୍ତର ମିଶ୍ରଣ ହୋଇ ତାହା ବ୍ରହ୍ମଚର୍ଯ୍ୟ ଓ ଶ୍ରଦ୍ଧା ଦ୍ୱାରା ପରିଚାଳିତ ହେବା ଆମର ଧ୍ୟେୟ । ଯେଉଁ ଗୁଣ ଜଣେ ବ୍ୟକ୍ତିକୁ ମହାନ୍ କରେ ତାହା ହେଉଛି ଶ୍ରଦ୍ଧା ।

– ସ୍ୱାମୀ ବିବେକାନନ୍ଦ